# କବିତା କଲ୍ଲୋଳ ।

ପ୍ରଥମ ସସ୍କରଣ ।

ଶ୍ରୀଗଙ୍ଗାଧର ମେହେର ।

ମୂଲ୍ୟ ଟ୦।୵ ମାତ୍ର ।

# ଉତ୍ସର୍ଗ ପତ୍ର ।

ସ୍ୱର୍ଗୀୟ କବିବର ରାୟ ରାଧାନାଥ ରାୟ ବାହାଦୂର ଦେବ,

ପବିତ୍ର ହୃଦୟେଷୁ ।

ଆପଣ ମୋତେ ଯେଉଁ ଅମୂଲ୍ୟ ବାତ୍ସଲ୍ୟ ଧନ ଦେଇ ଯାଇ ଅଛନ୍ତି ଆପଣଙ୍କ ଜୀବଦ୍ଦଶାରେ ମୁଁ ତହିଁର କଣିକାମାତ୍ର ପ୍ରତିଦାନ କରି ନ ପାରି ଋଣୀ ହୋଇ ରହି ଅଛି । ମୁଁ ଜଣେ ଦୀନ ଅଥଚ ମୋହର ହୃଦୟ ମଧ୍ୟ ହୀନ । ପ୍ରତିଦାନର ଉପଯୁକ୍ତ ପଦାର୍ଥ ମୋଠାରେ ଥିବାର ଅସମ୍ଭବ । ଭାବିଥିଲି "କୀଚକ ବଧ" କୁ ଆପଣଙ୍କ ନାମରେ ଉତ୍ସର୍ଗ କରି ହୃଦୟର କୃତଜ୍ଞତା ମାତ୍ର ପ୍ରତିଦାନ କରି କୃତ କୃତାର୍ଥ ହୋଇଥାନ୍ତି । କିନ୍ତୁ ଆପଣଙ୍କ ପ୍ରଦତ୍ତ ମନ୍ତବ୍ୟ ତାହାର ଉତ୍ସର୍ଗ ପତ୍ରେସ୍ୱକ ଶିରୋଭୂଷଣ ଥିବାରୁ ଆପଣ ତାହା ଗ୍ରହଣ କରିବାକୁ କୁଣ୍ଠିତ ହେବେ ବୋଲି ତହିଁରୁ ବିରତ ହେଲି ।

ଆଜିକାଲି ଅନେକଙ୍କର ଧାରଣା ଯେ ଅଧିକାଂଶ ଲୋକଙ୍କର ଉତ୍ସର୍ଗ ସ୍ୱାର୍ଥ ମୂଳକ । ସମ୍ପ୍ରତି ଆପଣ ସ୍ୱର୍ଗର ଦେବତା ମୁଁ ସର୍ବ ସାଧାରଣଙ୍କ ଧାରଣାକୁ ସମର୍ଥିତ କରିବା ଅଭିପ୍ରାୟରେ ଏହି ମୂଲ୍ୟ ହୀନ "କବିତା କଲ୍ଲୋଳ" ରେ ଭବଦୀୟ ସ୍ୱର୍ଗୀୟ ଆତ୍ମାର ସନ୍ତର୍ପଣ କରୁଅଛି ମୋହର ଭକ୍ତିର ଅନୁପାତରେ ଆପଣଙ୍କର ତୃପ୍ତି ହୋଇ ମହିମା ଯୁକ୍ତ ନାମୋଚ୍ଚାରଣ ଦ୍ୱାରା ଏହା ପ୍ରତି ସାଧାରଣଙ୍କ ଦୃଷ୍ଟି ଆକୃଷ୍ଟ ହେଲେ ମୋହର ସ୍ୱାର୍ଥ ସିଦ୍ଧି ହେବ ଇତି ।

ସମ୍ବଲପୁର
ଇଂ ତା ୧୬-୩-୧୬

ଭବଦୀୟ ଚରଣଭକ୍ତ
ଶ୍ରୀଗଙ୍ଗାଧର ମେହେର ।

# ଭୂମିକା ।

ମୋହର ଭୟ ହେଉଅଛି ଯେ ଏହି ପୁସ୍ତକର ନାମ ଦେଖି କେହି କେହି କଲ୍ଲୋଳକୁ ମହାର୍ଣ୍ଣବର ଉତ୍ତୋଳ ତରଙ୍ଗ ବୁଝି ଉପହାସ କରିବେ । କିନ୍ତୁ ପୁସ୍ତକର ଆକାର ଓ ମୂଲ୍ୟ ଦେଖି ସେପରି ଅର୍ଥ କରିବା ସଙ୍ଗତ ହେବ ନାହିଁ । ଅନ୍ତଶୀ ଗର୍ଭ ବାହିନୀ କ୍ଷୁଦ୍ର ତଟିନୀର ସଙ୍କୀର୍ଣ୍ଣ ସ୍ରୋତ ମୃଦୁ ମନ୍ଦ ମରୁଦ୍ଦିକମ୍ପିତ କ୍ଷୁଦ୍ର କ୍ଷୁଦ୍ର କଲ୍ଲୋଳହିଁ ଏଠାରେ ଅଭିହିତ ହେବାର ଯୋଗ୍ୟ । କାରଣ ଯେ କେତେକ ଉପାଧିଧାରୀ ବିଶିଷ୍ଟ ବନ୍ଧୁଙ୍କର ପ୍ରୀତିପୂର୍ଣ୍ଣ ବାକ୍ୟ ବାୟୁରେ ଆନ୍ଦୋଳିତ ହୋଇ ମୋହର ଦାରିଦ୍ର୍ୟ ଗହନ ବାହିନୀ ଜ୍ଞାନାଲୋକ ବିହୀନ କ୍ଷୁଦ୍ର ହୃଦୟ ନଦୀରେ ଏହି କେତେକ କ୍ଷୁଦ୍ର କ୍ଷୁଦ୍ର କବିତା କଲ୍ଲୋଳ ଉତ୍ଥିତ ହୋଇଅଛି । ବନ୍ଧୁମାନଙ୍କର ନାମୋଲ୍ଲେଖ କଲେ ସେମାନେ ମାଦୃଶ ଜନର ବନ୍ଧୁରୂପେ ସାଧାରଣରେ ପରିଚିତ ହେବାକୁ ଲଜ୍ଜା ବୋଧ କରିବେ ବୋଲି ତାହା କଲି ନାହିଁ ।

ଭାଗ୍ୟ ଲବ୍ଧ ଅଜ୍ଞବଞ୍ଚନ ବନ୍ଧୁ ଶ୍ରୀମାନ୍ ବ୍ରଜମୋହନ ପଣ୍ଡା ଛାତ୍ରାବସ୍ଥାରେ ଥାଇ ପୂବା ଭୂୟୋଭୂୟଃ ଉତ୍ସାହ ଭୂରି ଭୂରି ଆଶା ଓ ସହାନୁଭୂତି ପ୍ରଦାନ କରି ମୋହର ନିସ୍ପନ୍ଦ ଅବସନ୍ନ ଜୀର୍ଣ୍ଣ ଜୀବନରେ ଗୋଟିଏ ନବୀନ ଶକ୍ତିର ସଞ୍ଚାର କରାଇବାକୁ ଚେଷ୍ଟା କରି ଅଛନ୍ତି । ତାଙ୍କ ନାମ ଗୁପ୍ତ ରଖିବାକୁ ଉପାୟ ନାହିଁ । କାରଣ ସେ ମୋହର କବିତାମାନ ପ୍ରକାଶ କରିବା

ନିମନ୍ତେ ଉପଯୁକ୍ତ ସହାୟ ଲୋଡ଼ି "ସମ୍ବଲପୁର ହିତୈଷିଣୀ"ରେ ଗୋଟିଏ ଅବେଦନ ପ୍ରକାଶ କରିଥିଲେ । ମୋହର ଚିରପକ୍ଷପାତୀ ପରମ ହିତୈଷୀ ପଣ୍ଡିତ ଶ୍ରୀଯୁକ୍ତ ନୀଳମଣି ବିଦ୍ୟାରତ୍ନ ସାହିତ୍ୟ ପଞ୍ଚାନନ ମହାଶୟ ମଧ୍ୟ ସେହି ଅବେଦନକୁ ଅନୁମୋଦନ କରିବାଦ୍ୱାରା ଓଯସ୍ୱୀନ୍ ଓ ଫଳୋନ୍ମୁଖ କରିଦେଲେ ।

ପରମ ଭାଗ୍ୟର ବିଷୟ ସମ୍ବଲପୁରର ଜ୍ଞାନ ଜ୍ୟେଷ୍ଠ ସୁସନ୍ତାନ ମାନନୀୟ ଶ୍ରୀମାନ୍ ରାମନାରାୟଣ ମିଶ୍ର ଓକିଲ **M. A. B. L.** ମହୋଦୟ ସ୍ୱତଃ ପ୍ରଣୋଦିତ ହୋଇ ମୋହର କବିତାମାନ ପ୍ରକାଶ କରିଦେବାକୁ ସସ୍ନେହ ସାନୁଗ୍ରହ ଅଙ୍ଗୀକାର କରିଅଛନ୍ତି ସମ୍ପ୍ରତି ତାଙ୍କର ଅର୍ଥାନୁକୂଲ୍ୟରେ ଏହି କେତୋଟି କବିତା ପ୍ରକାଶିତ ହେଲା । ଭରଷା ଅଛି କ୍ରମାନ୍ୱୟରେ ଅନ୍ୟାନ୍ୟ କବିତା ପ୍ରକାଶ କରିବାରେ ପ୍ରଶଂସିତ ମହୋଦୟଙ୍କର ଔଦାର୍ଯ୍ୟ ଅକ୍ଷୁଣ୍ଣ ରହିବ । ପରିଶେଷରେ ବକ୍ତବ୍ୟ ଏହି ଯେ ଭାରତୀଙ୍କର ପ୍ରିୟ ପୁତ୍ର ଉତ୍କଳର ସୁପରିଚିତ କବି ଶ୍ରୀଯୁକ୍ତ ନନ୍ଦକିଶୋର ବଳ **B. A.** ସମ୍ବଲପୁର ଇଂରାଜୀ ହାଇସ୍କୁଲର ହେଡ଼ମାଷ୍ଟର ମହାଶୟ ମୋହର କବିତାମାନ ପାଠକରି ସ୍ନେହଦୃଷ୍ଟିର ବଶବର୍ତ୍ତିତାରେ ଯାହା ଲେଖିଅଛନ୍ତି ତାହା ଏହି ପୁସ୍ତକର ମୁଖବନ୍ଧରେ ରଖିଅଛି ।

ଉପରୋକ୍ତ ସଦାଶୟ ମହାତ୍ମା ବୃନ୍ଦଙ୍କ ନିକଟରେ ମୋହର କୃତଜ୍ଞତା ଅବିଶ୍ୱର ହେଲେହେଁ ତାଙ୍କୁ ଗମ୍ଭୀର ଚିର କରି ଆନନ୍ଦ ଗଦ୍‌ଗଦ ଚିତ୍ତରେ ଜ୍ଞାପନ କରୁଅଛି ଇତି ।

ତା ୧୬ ମାର୍ଚ୍ଚ ୧୯୧୬ ଖ୍ରିଷ୍ଟାବ୍ଦ

ବିନୟାବନତ,
ଶ୍ରୀଗଙ୍ଗାଧର ମେହେର ।

# କବି ଶ୍ରୀଯୁକ୍ତ ଗଙ୍ଗାଧର ମେହେର ।

ପ୍ରିୟତମ ଗଙ୍ଗାଧର ବାବୁ,

ଆପଣଙ୍କ ପରି ସୁକବିଙ୍କର କବିତାପାଠ ସୌଭାଗ୍ୟ ବୋଲି ମଣିଲି । "ଚନ୍ଦ୍ର, ରଜନୀ" ପ୍ରଭୃତି କବିତା ଗୁଡ଼ିକ ପଢ଼ିଥିଲି । ସେ ଗୁଡ଼ିକ ସୁକାବ୍ୟ "କୀଚକ ବଧ" ର କନିଷ୍ଠ ସ୍ଥାନୀୟ ହେଲେହେଁ ତନ୍ମଧ୍ୟରେ ଗଙ୍ଗାଧରଙ୍କ ଗଙ୍ଗାଜୀବି ପଣର ନିଦର୍ଶନ ମିଳେ "ବେଦବ୍ୟାସ" ର ରଚନା ପାରିପାଟ୍ୟ ବିଶେଷ ଭାବରେ ପ୍ରଶଂସାର୍ହ ।

ଆଜି "ପ୍ରଣୟାଙ୍କୁର" ପାଇ ଏକାସନରେ ଶେଷ ନକରି ରହି ପାରିଲି ନାହିଁ । ଏହା କବି ଗଙ୍ଗାଧରଙ୍କ ପ୍ରତିଷ୍ଠାର ଉପଯୁକ୍ତ ହୋଇଅଛି । "ଶକୁନ୍ତଳା"ର ପ୍ରଥମ ସର୍ଗ ଅବଲମ୍ବନରେ ରଚିତ ହୋଇଥିଲେହେଁ ଭାଷାର ସୌନ୍ଦର୍ଯ୍ୟ ଓ ନିର୍ବାଚନ-କୌଶଳ କବିଙ୍କ ନିଜସ୍ୱ ।

କବି ଗଙ୍ଗାଧର ଏକା ସମ୍ବଲପୁରର କାହିଁକି, ଉତ୍କଳର ରତ୍ନ ସ୍ୱରୂପ । କିନ୍ତୁ ଉତ୍କଳରେ ରତ୍ନର ଆଦର ହେଉନି ନାହିଁ, ଏହା କବିଙ୍କର ତଥା ଉତ୍କଳର ଦୁର୍ଭାଗ୍ୟ ।

ଗଙ୍ଗାଜଳ ଯେପରି ସର୍ବସ୍ଥାନକୁ ପବିତ୍ର କରିଦିଏ ସେହିପରି ଶକ୍ତିଶାଳୀ କବି ଗଙ୍ଗାଧର ଯେ କୌଣସି ବିଷୟରେ ହସ୍ତକ୍ଷେପ କରିଅଛନ୍ତି, ତାହାକୁ ସୁନ୍ଦର କରି ପାରି ଅଛନ୍ତି । ତାଙ୍କର "କୀଚକ ବଧ" "ଇନ୍ଦୁମତୀ" ପରି ତତ୍ ପ୍ରଣୀତ "ପ୍ରଣୟାଙ୍କୁର"

ଅଯୋଧ୍ୟା ଦୃଶ୍ୟ" "*" "*" "ବେଦବ୍ୟାସ ପ୍ରଭୃତି ଖଣ୍ଡ କବିତା ମଧ୍ୟ ପ୍ରସାଦ ମାଧୁର୍ଯ୍ୟ ଗୁଣରେ ପାଠକର ମନୋହାରିଣୀ ହୋଇଅଛି । ତାଙ୍କର ରଚନା ଯେପରି ପ୍ରାଞ୍ଜଳ ସେହିପରି ଅଲଂକୃତ । ଆଧୁନିକ ଭାବ ଓ ସଂସ୍କୃତ ସାହିତ୍ୟ ସୁଲଭ ଭଙ୍ଗିର କିପରି ମଣି କାଞ୍ଚନ ସଂଯୋଗ ହୋଇଅଛି, ପ୍ରତ୍ୟେକ ପାଠକ ତାହା ହୃଦୟଙ୍ଗମ କରି ପାରିବେ ।

ପ୍ରକୃତ କଥା କହିବାକୁ ଗଲେ ଗଙ୍ଗାଧରଙ୍କ ଶକ୍ତି କେବଳ ସ୍ଥାନ ବର୍ଣ୍ଣନାଠାରୁ କାହାଣୀ ଘଟନାର ବର୍ଣ୍ଣନାରେ—ନିସର୍ଗ ସୌନ୍ଦର୍ଯ୍ୟ ବର୍ଣ୍ଣନାରୁ ମାନସ ସୌନ୍ଦର୍ଯ୍ୟ ଚିତ୍ରଣରେ ଅଧିକ ତର ପରିସ୍ଫୁଟ ହୁଏ । ଏହା ସୁକବି ମାନଙ୍କମଧ୍ୟରେ ସୁଦ୍ଧା ଗୋଟିଏ ଦୁର୍ଲ୍ଲଭ ଶକ୍ତି । ମୋର ଆଶା ଏହି ଯେ କବି ତାଙ୍କର ଏହି ଶକ୍ତିକୁ ଅନୁଭବ କରି ନିସର୍ଗ ନିଦେଶ ଅନୁସରଣ ପୂର୍ବକ ନାନା କାବ୍ୟ ପ୍ରଣୟନ ଦ୍ୱାରା ସ୍ୱଜୀବନକୁ ସଫଳ କରିବେ ଓ ଉତ୍କଳ ସାହିତ୍ୟକୁ ମହିମାନ୍ୱିତ କରାଇବେ ।

ଆଉ ଗୋଟିଏ କଥା ନକହି ରହି ପାରିଲି ନାହିଁ । ଉତ୍କଳ ସାହିତ୍ୟରେ ଆଦର୍ଶ ଚରିତ୍ରଚିତ୍ରଣ ନାହିଁ କହିଲେ ଚଳେ । କବିବର ରାଧାନାଥଙ୍କ ରତ୍ନାବଳୀର ଭଣ୍ଡାର ଗ୍ରନ୍ଥାବଳୀରେ ଯେଉଁ ଅଭାବ ରହି ଯାଇଅଛି ତାହାର ପ୍ରପୂର୍ତ୍ତି କିପରି ହେବ ? "କୀଚକ ବଧ" ଯୁବକ ଯୁବତୀମାନଙ୍କ ହସ୍ତରେ ପଡ଼ିବା ପକ୍ଷରେ କାହାର କାହାର ଆପତ୍ତି ହୋଇପାରେ । ତହିଁରେ ପ୍ରଣୟ—ପାପ ପ୍ରଣୟ-ବର୍ଣ୍ଣନା ସଙ୍ଗେ ସଙ୍ଗେ ତଜ୍ଜନିତ ବିଷ-ମୟ ଫଳର ବର୍ଣ୍ଣନ ଥିଲେହେଁ, ପଢ଼ୁଁ ପଢ଼ୁଁ ଅପରିପକ୍ୱଚିତ୍ତ ଓ ଅଗଠିତ ମନରେ ବିକାରର ଆବିର୍ଭାବ କିମ୍ବା ଷଡ୍ଯୁପାତ

ହୋଇପାରେ । ନାରୀ ପ୍ରଣୟ ବ୍ୟତୀତ ମାନବ ଚରିତ୍ର ଅନ୍ୟ ମହତ୍ ଭାବ ଯଥା ନିର୍ମଳ ସଂଯତ ପ୍ରଣୟ ତଦ୍ଦ୍ୱାରା ପବିତ୍ରୀକୃତ କାବ୍ୟର ଅଭାବ ଉତ୍କଳ ସାହିତ୍ୟରେ ଅଛି । ଚିଲିକା, ମହାଯାତ୍ରାରେ ଯେପରି ପ୍ରକୃତି ଚିତ୍ରର ପରାକାଷ୍ଠା ପ୍ରଦର୍ଶିତ ହୋଇଅଛି. ସେହିପରି ମାନବଚରିତ୍ର ଚିତ୍ରଣର ଉଚ୍ଚଆଦର୍ଶ କିଏ ପୂରଣ କରିବେ ? କବି ଗଙ୍ଗାଧର ଏ ଶକ୍ତିର ସ୍ପଷ୍ଟ ଉନ୍ମେଷ "କୀଚକବଧ"ରେ ପ୍ରଦର୍ଶନ କରି ଅଛନ୍ତି । ତାହା ପରିସ୍ଫୁଟ ହେବକି ?

ଶ୍ରୀ ନନ୍ଦକିଶୋର ବଳ ।



# ଉପକ୍ରମଣିକା ।

"କୀଚକ ବଧ" ପ୍ରକାଶିତ ହେଲାଉତ୍ତାରୁ ମହାକବି କାଳିଦାସଙ୍କର ଶକୁନ୍ତଳାର ଭାବ ଅବଲମ୍ବନ କରି ଗୋଟିଏ ପଦ୍ୟ ପୁସ୍ତକ ଲେଖିବାର ଆରମ୍ଭ କରି ଥିଲି, କିନ୍ତୁ ମୋର ଚିରସହଚରୀ ଅସୁବିଧା ତାହା କରିଦେଲା ନାହିଁ । ସୁଦୀର୍ଘ କାଳ ପରେ ପ୍ରିୟ ସୁହୃଦ୍ ଶ୍ରୀମାନ୍ ବ୍ରଜମୋହନ ପଣ୍ଡାଙ୍କର ଆଗ୍ରହାତିଶଯ୍ୟ ହେତୁ ପ୍ରଥମ ଅଙ୍କକୁ ପୂର୍ଣ୍ଣକରି "ପ୍ରଣୟାଙ୍କୁର" ନାମ ଦେଲି । ଏହା ଶକୁନ୍ତଳାର ଠିକ ଅନୁବାଦ ନୁହେଁ, ଏଥିରେ ଅନେକ ମୂଳ ପରିତ୍ୟକ୍ତ ଓ ନୂତନ କଥା ସନ୍ନିବିଷ୍ଟ ହୋଇଅଛି । "ବର୍ଷାଚିତ୍ରଟି" ମଧ୍ଯ ପୁରାତନ ଓ ଅନେକ ଦିନ ହେଲା "ବିଭୂତି" ନାମରେ "ଉତ୍କଳ ସାହିତ୍ୟ"ରେ ବାହାରି ଥିଲା । ଅବଶିଷ୍ଟ ଗୁଡ଼ିକ ଅଳ୍ପଦିନପୂର୍ବେ "ସମ୍ବଲପୁର ହିତୈଷିଣୀ"ରେ ଦେଖା ଦେଇଥିଲେ । ପରେ "ବେଦବ୍ୟାସ"ର କଳେବର ପ୍ରାୟ ଦୁଇଗୁଣ ଓ "ସୋମନାଥ ବିଜୟ"ର ଅର୍ଦ୍ଧ ଦେଢ଼ ଗୁଣ ବୃଦ୍ଧି ହୋଇଅଛି । ଆଉ ଯାହା ହ୍ରାସ ବୃଦ୍ଧି ହୋଇଅଛି ତାହା ନଗଣ୍ୟ ।

ବ୍ରଜ ମୋହନ ବାବୁଙ୍କର ସାହଚର୍ଯ୍ୟରେ "ବେଦବ୍ୟାସ" ଦେଖିବାର ସୁଯୋଗ ଓ ସୁବିଧା ଲାଭ ହୋଇଥିଲା ଏବଂ ତାଙ୍କର ପ୍ରବର୍ତ୍ତନାରେ ତାହା ରଚିତ ଓ ପରିବର୍ଦ୍ଧିତ ହୋଇଅଛି । ଗୋଟିଏ ବସ୍ତୁକୁ ପୂର୍ଣ୍ଣାଙ୍ଗ ବିଶିଷ୍ଟ ଦେଖିଲେ ଯେଉଁ ମାଧୁର୍ଯ୍ୟ

ଅନୁଭୂତ ହୁଏ ଖଣ୍ଡ ଖଣ୍ଡ କରି ଦେଖିଲେ ତାହା ହୋଇନଥାଏ

"ସମ୍ବଲପୁର ହିତୈଷିଣୀ"ରେ ଯାହା ଖଣ୍ଡ ଖଣ୍ଡ ହୋଇ ପ୍ରକାଶିତ ହୋଇଥିଲା ତାହା ପୂର୍ଣ୍ଣାବୟବରେ ପୁସ୍ତକାକାରରେ ରହିଲେ ସହୃଦୟ ପାଠକମାନଙ୍କ ପ୍ରଶସ୍ତ ଚିତ୍ତରେ କଥଞ୍ଚିତ୍ ପ୍ରୀତି ଉତ୍ପାଦନ କରି ପାରିବ ବୋଲି ଏତଦନ୍ତର୍ଗତ କବିତାମାନ ପ୍ରକାଶ କଲି । ଏଥିରେ ଆଶାର ଆଂଶିକ ସଫଳତା ଉପଲବ୍ଧ ହେଲେ ଅନ୍ୟ କେତେକ କବିତା ପୁସ୍ତକାକାରରେ ପ୍ରକାଶ କରିବାର ବାସନା ଅଛି । ଇତି ।

ଗ୍ରନ୍ଥକାର ।



# ସୂଚୀ ।

# ପ୍ରଣୟାଙ୍କୁର ।

ମୃଗୟା ବିନୋଦେ ଦୁଷ୍ମନ୍ତ ନରେଶ
ବିହାର କରନ୍ତି ବନେ,
ପ୍ରଫୁଲ୍ଲହୃଦୟେ ଧନୁଶର କରେ
ଶୋଭିତ ହୋଇ ସ୍ୟନ୍ଦନେ ।
ଭ୍ରମୁ ଭ୍ରମୁ ଏକ— ମୃଗ ଆସିହେଲା
ଅକସ୍ମାତ ନୃପଅଗ୍ରେ,
ଧନୁଶରଧାରୀ ନରେଶଙ୍କୁ ଚାହିଁ
ପଳାଇଲା ତହୁଁ ବ୍ୟଗ୍ରେ ।
ପଳାୟିତ ମୃଗ— ପଛେ ନୃପାଦେଶେ
ସୂତ ଚଳାଇଲା ରଥ,
କିନ୍ତୁ ଅଶିଥିଳ ରଶ୍ମିକର ଥାଏ
ବିଲୋକି ବନ୍ଧୁର ପଥ ।
ସ୍ୱଭାବ ସୁଲଭ ଲମ୍ଫେ କୃଷ୍ଣସାର
ଗଗନେ ଅଧିକ ଯାଇ,
ଥରେ ଥରେ ମାତ୍ର ଦେଉଥାଏ ବନ—
ଭୂମିରେ ପାଦପକାଇ ।
ପୁଚ୍ଛ ଲପଟାଇ ଗ୍ରୀବ ସଙ୍କୁଚାଇ
ଅଶୁଭ ପତନ ଭୟେ,

ଗ୍ରୀବାଭଙ୍ଗି ଥରେ— ଥରେ ରଥେ ଚାହିଁ
ପଳାଏ ପୁଣି ଅଥୟେ ।
ଶ୍ରମବିବୃତ— ମୁଖଚ୍ୟୁତ ଦର—
କବଳିତ କୁଶମାନ,
ଗମନ-ପଥରେ ଇତସ୍ତତଃ ପଡ଼ି—
ଯାଉଥାଏ ସ୍ଥାନ ସ୍ଥାନ ।
ସମସ୍ଥାନ ଦେଖି ରଶ୍ମି ଛାଡ଼ି ସୂତ
ଘୋଟକ ଦେବାରୁ ଗ୍ଳନ,
କର୍ଣ୍ଣ ସପଟାଇ ଲଇଁ ଲମ୍ଫପଦେ
ଅଣେଢ଼େଲେ ବେଗଶାଳୀ ।
ସୁଉଚ୍ଚୈର ଖୁର— ଧୂଳି ଦୂରେଷ୍ଠ
ଆଗଳୁଥାନ୍ତି ଦଉଡ଼ି,
ଲାଗୁଦେଲ୍ଲ ନାହିଁ ପାଦତାଙ୍କ ତଳେ
ପଡ଼େ ଜବା ଯାନ୍ତି ଉଡ଼ି ।
ନରେଶଙ୍କୁ ଯାହା ଅଗେ ଦୂରେଥାଇ
ଦଶୁଥିଲା ସାନସାନ,
ସହସା ନୟନ— ଅଗ୍ରେ ବଡ଼ ବଡ଼,
ଦଶିଲା ସେ ଦ୍ରବ୍ୟମାନ ।
ବେଗପାର୍ଶ୍ୱବଳ— ଦ୍ରବ୍ୟମାନ ତହିଁ
ଅଣିଲେ ସରଳ ଭ୍ରମ,
ଭିନ୍ନ ଭିନ୍ନ ଦ୍ରବ୍ୟ ଅଚ୍ଛିନ୍ନ ଦଶିଲେ
ବନ୍ଧୁର ଦଶିଲା ସମ ।

ଦେଖୁଁ ଦେଖୁଁ ରଥ ଉପଗତ ହେଲା
ସାରଙ୍ଗ କଚ୍ଛ ସତ୍ୱର,
ସମକ୍ଷରେ ମୃଗ ଦେଖି ବସାଇଲେ
ଧନୁର୍ଗୁଣେ ରାଜା ଶର ।
"ମାରନା ମାରନା, ଆଶ୍ରମ ମୃଗଏ"
ଏକାଳେ ହେଲା ଏ ଶବ୍ଦ,
ଶବ୍ଦ ଲକ୍ଷକରି ତପସ୍ୱୀ ଯୁଗଳ
ଦେଖି ରାଜା ହେଲେ ସ୍ତବ୍ଧ ।
ସସମ୍ଭ୍ରମେ ପୁଣି ସାରଥିକି କହି
ରୁନ୍ଧାଇଲେ ତହୁଁ ରଥ,
ବେଗେ ଆସି ବେନି ତପସ୍ୱୀ ନିକଟେ
ଆଶୀଷିଲେ ଟେକି ହସ୍ତ ।
ବୋଇଲେ ହେ ନୃପ ଆଶ୍ରମ ମୃଗଏ
ବଧ୍ୟ ନୁହେ ଶମ୍ଭୁଙ୍କର,
ତୁଳକୁଣ୍ଡେ ବହ୍ନି ପ୍ରାୟେ ମୃଦୁ ମୃଗ—
ଶରୀରେ ନକ୍ଷେପ ଶର !
କାହିଁ ବଜ୍ରସାର ଶର ତୁମ୍ଭ କାହିଁ
କୃଷ୍ଣସାର କ୍ଷୀଣ ପ୍ରାଣ,
ନୁହେ ତୁମ୍ଭ ଶର ଦୁର୍ବଳ ମାରଣେ
କରନ୍ତି ଆରତ ତ୍ରାଣ ।
ବଚନ୍ତେ ନମିଲେ ମୁନିଙ୍କି ନୃପତି
ଧାନୁଷ୍କ ପ୍ରତିସଂହରି,

ସହର୍ଷେ ଋଷିଏ ପ୍ରଶଂସିଲେ "ସାଧୁ-
ସାଧୁହେ ନୃପ କେଶରୀ" ।
ସାଧୁ ପୁରୁବଂଶ ଅବତଂସ କଲ
କୁଳ ଅନୁରୂପ କାମ,
ଲଭ ପୁତ୍ରରତ୍ନ ଶୂର ଚକ୍ରବର୍ତ୍ତୀ
ନିଖିଳ ସଦ୍‌ଗୁଣ ଧାମ ।
ବିପୁଳ ଆନନ୍ଦ ହେଉଅଛୁ ମନେ
ତୁମ୍ଭଙ୍କର ଆଗମନେ,
ସେ ଆନନ୍ଦ ଶିରେ ଆହ୍ଲାଦ ଢାଳନ୍ତୁ
ଅତିଥି ହୋଇ ଏ ବନେ ।
କଣ୍ୱ ମୁନିଙ୍କର ଆଶ୍ରମ ଦେଖୁଛ
ଦେଖନ୍ତୁ ମାଳିନୀତୀରେ,
ତୀର୍ଥ ଯାଇଛନ୍ତି ମହର୍ଷି ତାହାଙ୍କ
ଦୁହିତା ଛନ୍ତି କୁଟୀରେ ।
ତୁମ୍ଭଙ୍କ ରାଜ୍ୟରେ ରହି ଧର୍ମକର୍ମେ
ନ ଲଭ କେବେ ଅଶାନ୍ତି,
ତୁମ୍ଭଙ୍କ ଶାସନ— ପ୍ରଭାବକୁ ମୁନି
ସତତ ପ୍ରଶଂସୁ ଥାନ୍ତି ।
କର୍ମ ଶେଷେପ୍ରଭୁ— ପାର୍ଶ୍ୱେ କରୁଥାନ୍ତି
ତୁମ୍ଭଙ୍କ ଶୁଭ କାମନା,
ଥାନ୍ତେ ଯଦି ଆଜି ତୁମ୍ଭଙ୍କ ଦର୍ଶନେ
ହୋଇଥାନ୍ତେ ପ୍ରୀତମନା ।

ଆସିଛନ୍ତି ଛମୁ ବାନ୍ଧବରେ ଯଦ
ଆଶ୍ରମେ ନୋହି ସତ୍‌କୃତ,
ମହର୍ଷି ଶୁଣିଲେ ଆଶ୍ରମ ବାସିଏ
ନଷ୍ଟେଁ ହେବେଁ ତିରସ୍କୃତ ।
ତପସ୍ୱୀ ଆଗ୍ରହ ଅନୁଗ୍ରହ ବୋଲି
ସ୍ୱୀକାର କରି ବଚନେ,
ସତ୍ୱରେ ତହୁଁରୁ ଚଳିଲେ ନରେଶ
ଆଶ୍ରମ-ପଦ ଦର୍ଶନେ ।
ତପୋବନ ମଧ୍ୟେ ଉପଗତ ହୋଇ
ଦେଖିଲେ ସକୌତୂହଳେ,
ଶୁକ-ମୁଖ-ଭ୍ରଷ୍ଟ ତୃଣ-ଧାନ୍ୟମାନ
ପଡ଼ିଛନ୍ତି ପାଦପ ତଳେ ।
ବୋଧହେଲା ବ୍ୟାଧ— ଭୟେ ଶୁକ ଗଣ
ଛାଡ଼ି ଦୂର ବିସ୍ମରଣେ,
ସୁଖେ ଚରନ୍ତି ବନ— ଶୋଭାକୁ ବଢ଼ାନ୍ତି
ମରକତ ଅପଘନେ ।
ପଦ୍ମରାଗ-ଚଞ୍ଚୁ ଚନ୍ଦ୍ରକଣ୍ଠ-ଶୋଭୀ
ସେହିକାଳେ ଏକବାରେ—
ଉପସ୍ଥିତ ହୋଇ— ଗଲେ ନୃପବର
ଭାବରାଜ୍ୟ ଅଧିକାରେ ।
ପଡ଼ିଛି କେଉଁଠାରେ ଇଙ୍ଗୁଦୀ ନିର୍ଯ୍ୟାସ
ସ୍ନିଗ୍ଧ ଶିଳାଖଣ୍ଡ ଚୟ,

ଦେଉଥାନ୍ତି ଋଷି— ହସ୍ତରେ ଇଙ୍ଗୁଦୀ
ବଦାରଣ ପତ୍ରଚୟ ।
ମୁନି-କୁମାରଙ୍କ ହସ୍ତୁଁ କୁଶାଙ୍କୁର
ଭକ୍ଷଣରେ ଚରାଭ୍ୟସ୍ତ—
ଚଳୁଥାନ୍ତି ମୃଗ--- ଗଣ କାହିଁ ନୃପ
ଦର୍ଶନେ ନ ହୋଇ ତ୍ରସ୍ତ ।
ବାୟୁ କମ୍ପିତ କୁଲ୍ୟାଜଳେ-ଧୌତ-
ମୂଳ ତହିଁ ତରୁ ମାନ
କନ୍ଦୁ ହୋମଧୂମ ଲାଗି ଲାଗି ପଲ୍ଲ-
ଚୟୁତାଙ୍କ ହସେ ମ୍ଳାନ ।
କିଛି ଦୂରେ ରାଜା ମୃଗୟାର ' ବେଶ
ତେଜି ମୂତେଦେଇ ରଥ,
ବିନୀତ ବେଶରେ ଗଲେ ଲକ୍ଷକର
ଆଶ୍ରମ କୁଟୀର ପଥ ।
ଆଶ୍ରମ ମାଧୁରୀ ଦେଖି ଦେଖି 'ରାଜା
ଚଳିଥାନ୍ତି ଧୀରେ ଧୀରେ,
ଯେଉଁ ଦିଗେ ଦୃଷ୍ଟି- ଯାଏ ସେଦିଗରୁ
ନପାରେ ଫେର ଅତରେ ।
ଯଦବଳେ ଛପେରେ ଅନ୍ୟଦିଗ ପୁଣି
କରନାଏ ଆକର୍ଷଣ,
ଆକର୍ଷଣ ନୂତ୍ୱେ କରୁଥାଏ ସିନା
ପୀୟୂଷ ଧାର ବର୍ଷଣ ।

ବର୍ଣ୍ଣଜନ ମନେ ପ୍ରୀତ-ପ୍ରସ୍ରବଣ
ଢ଼ାଳଇ ଯାହାଙ୍କ ରୂପ,
ତପୋବନ ଦୃଶ୍ୟ ଦରଶନେ ମୁଗ୍ଧ
ହୁଅନ୍ତୁ ଆଜ ସେ ଭୂପ ।
ତରୁଛାୟା ସ୍ନେହ ପାଇ ନରନାଥ
କରନ୍ତୁ ମନେ ବିଗ୍ଭର,
ଏଶୀତଳ ଶାନ୍ତ— ପ୍ରଦ ଛାୟାସମ
ନୁହେ ଛତ୍ର-ଛାୟା ଛର ।
ଏଣୁ ପୁତ୍ରହସ୍ତେ ରାଜ୍ୟଭାର ଦେଇ
ରଘୁବଂଶ ନୃପଗଣ,
ଶେଷେ ଗମୁଥିଲେ ଶାନ୍ତ ଲଭିବାକୁ
ଶାନ୍ତ-ମୟ ତପୋବନ ।
ଦୃଶ୍ୟେ ଭାସୁଥାଏ ଦୃଷ୍ଟି ନୃପଙ୍କର
ଭାବେ ଭାସୁଥାଏ ମନ,
ଏକାଳେ କର୍ଣ୍ଣରେ ପଡ଼ିଲା ରମଣୀ-
ରମଣୀୟ କଣ୍ଠସ୍ୱନ ।
ଚମକି ଚାହିଁଲେ ପାଶେ କେହି ନାହିଁ
ଶବ୍ଦ ଲକ୍ଷ କରି ଯାଇ,
ଲୂତାଜାଳଭେଦି ଦେଖିଲେ ଅଦୂରେ
ପାଦପ ଉହାଡ଼େ ଥାଇ ।
ଆନନ୍ଦ-ପ୍ରତିମା ପ୍ରାୟେ ମନୋହର-
ମୂରତ ଯୁବତୀ ତିନ,

ରୂପରଣେ ଦଳ-　　ଦେବେ ଯେହ୍ନ ଗୃରୁ-
ଚରଣେ ସୁରକାମିନୀ,
ବାମକକ୍ଷେ ଜଳ—　　କୁମ୍ଭଧର ଅଙ୍ଗ-
ଲତିକା ଦକ୍ଷିଣେ ଢ଼ାଳ,
ବାମେତର ଭୁଜ　　ଦୋଳାଇ ଦୋଳାଇ
ଅସନ୍ତି ମନ୍ଥରେ ଗୃଲ ।
ଗୃଲଥାନ୍ତି କେହି　　ନୋହି କାହା ଅଭ
ଅଗେବ ଅଭ ପଛରେ,
ପ୍ରେମାଳାପ କରି—　　କରି କଉତୁକେ
ନାନାମତେ ପରସ୍ପରେ ।
କଥାରୁ ତାଙ୍କର　　ଚିହ୍ନିଲେ ନୃପତି
ଏକନାମ ଶକୁନ୍ତଳା,
ଥିଲେ ଅନସୂୟା　　ପ୍ରିୟମ୍ବଦା ନାମ
ଅନ୍ୟଯେ ବେନି ଅବଳା ।
ଶକୁନ୍ତଳା କଣ୍ୱ—　　ଦୁହିତା ଅପର
ବେନି ତାର ସହଚରୀ,
ଶକୁନ୍ତଳା ଦିଶୁ—　　ଥିଲା ବେଳପଦ୍ମ
ମଧରେ ପ୍ରସୂନ ପରି ।
ତାରୂପ ମାଧୁର୍ଯ୍ୟ　　କଲା ଅଧିକାର
ହୃଦରାଜ୍ୟ ରାଜାଙ୍କର,
ଅନ୍ତଃପୁର ନାରୀ—　　ରୂପସ୍ତୁ ଛତାଙ୍କୁ
ଯୋଡ଼ିଲା କରପତର ।

ଭାଙ୍ଗିଦେଲା ବନ— ବଲ୍ଲରୀ ଉଦ୍ୟାନ-
ଲତିକାର ଅଭିମାନ,
ଗୋଲାପ କଣ୍ଟକ— ବନବାସୀ ବୋଲି
ବାସଙ୍ଗ ବ ତା ସମାନ ।
ସୁନ୍ଦରୀ ଦର୍ଶନ ଶୁଭ ଅବସର
ପାଇ ଅବଲମ୍ବେ ମନ,
ଆନନ୍ଦ ବୟସ୍ୟ ଯୁଗ ଯୁଗପତ
କରନେଲା ଆଲିଙ୍ଗନ ।
ସୁକୁମାରୀ କଣ୍ଠ- କଳସ ସହର
କରାଇଲା ଆମନ୍ତ୍ରଣ,
ଶଙ୍ଖା ସହଚର କଙ୍କଣ କଙ୍କଣ-
ନାଦ କଣ୍ଠକ ସ୍ମରଣ ।
ମୃଦୁ ମନୋହର କଳେବରେ ଦେଖି
ବଲ୍କଲର ପରଛଦ,
ବିଚାରିଲେ ଆହା ରାଜ-ଲକ୍ଷ୍ମୀ ତନୁ
ସମର ଚନ୍ଦ୍ରା ଆସ୍ପଦ ।
ବିଚାରତ ହୋଇ ପଡୁଛି ତଥାପି
ଲଲନା ଲାବଣ୍ୟ ପ୍ରଭା,
ଯଥା ଶିବଜଟ— ଚନ୍ଦ୍ରିକା ଶୈବାଳ
ବେଷ୍ଟିତ ପଦ୍ମିନୀ ଅବା ।
କଳଙ୍କହି ଥାଇ କଳାକର କୋଳେ
କରଇ ନେତ୍ର ରଞ୍ଜନ,

ସ୍ୱଭାବ ସୁନ୍ଦର ଅଙ୍ଗକୁ ଜଗତେ
ନ ହୁଏ ବେଶ ମଣ୍ଡନ ।
ଯଉବନ ପ୍ରଭା ସମୁଜ୍ଜ୍ୱଳ ମୁଖ-
ମଣ୍ଡଳର ସ୍ୱେଦକଣ,
ଯହିଁ ବିଶୋଭିଲେ ନବ ବିକଶିତ
କମଳେ ହିମ ପତନ ।
ଏ କଠିନ କର୍ମ ଦେଲେ କୁମାରୀଙ୍କ
ମୁନି କି ବିଚାରି ମନେ,
ପାଠ ଦଉଡ଼ିଙ୍କ ଲଗାଇ ଅଛନ୍ତି
କାନନ ଗଜ ବନ୍ଧନେ ।
ତପୋବନେ ଏକା ଅସମ୍ଭବ କଥା
ଜଗତେ ସମ୍ଭବ ପାରେ,
ଶମୀତରୁ ଏବା କାଟୁଛନ୍ତି ମୁନି
ନୀଳୋତ୍ପଳ ଦଳଧାରେ ।
ସଖୀଦ୍ୱୟ ଯାଇ ସଲିଳ ଢାଳିଲେ
ବାଳତରୁ ଆଳବାଳେ,
ଶକୁନ୍ତଳା ଆସି ସହକାର ତଳେ
ଉପଗତ ଏହି କାଳେ ।
କୁମ୍ଭତଳେ ଥୋଇ ସୁଢ଼ଳ ଶ୍ରୀଅଙ୍ଗ
ସଲଖାଇ ଦେଲେ ଛିଡ଼ା,
ଶାଖା-ହୃଦେ ରଜ- ପୁର ସ୍ୱର୍ଣ୍ଣବଲ୍ଲୀ
ଛବିର କରାଇ କ୍ରୀଡ଼ା ।

ପାଣି ପଦ୍ମରାଗ— ପଲ୍ଲବ ଯହିଁରେ
ନଖହୀର ପୁଷ୍ପକଳି,
ତାହାଗଢ଼ା ସ୍ୱର୍ଣ୍ଣ- ଶିଳ୍ପୀହସ୍ତେ ଏହା
ବିଶ୍ୱଶିଳ୍ପୀ ଛନ୍ଦ ଗଢ଼ି ।
ଭାବନ୍ତ ନରେଶ ଏଶୋଭବ କନା
ନରଭାଗ୍ୟ ଉପବନେ,
ଅବା ତରଦନ ଥିବ ତପୋବନ
ସତ୍ତ୍ୱନର୍ଘ୍ୟ ସମ୍ପାଦନେ ।
ଲତାଶ୍ରିନୂନ୍ଦେ ବାମା ବିଧାତା ମାନସ
ଲତାଚୂଡ଼ଶୋଭୀ ଫୁଲ,
ଭାଗ୍ୟ ଦେବୀଶିର ଯୋଗ୍ୟ ଏ ଭୂଷଣ
ଫୁଲ ଅମୂଲ୍ୟ ଅତୁଲ୍ୟ ।
ଯାହା ପୂଜାପାଇଁ ଥାଉ ଏ କୁସୁମ
ଧନ୍ୟ ମୋ ନେତ୍ର ଭ୍ରମର,
ଭାଗ୍ୟେତା ମାଧୁରୀ ସୁଧାପାନ କଲା
ପାଇ ଶୁଭ ଅବସର ।
ସୁନ୍ଦସ୍ଥ ରହିଲା ସହକାର ସଙ୍ଗୀ
ନଅଳୀ ଲତାକୁ ଥରେ,
ଉନଦନ ପରେ ପଡ଼ୁଛ ନଅଳୀ
ସୁନ୍ଦରୀ ନେତ୍ର ପଥରେ ।
ନଅଳୀ ପ୍ରଶାଖା ମୂଳ ମାନଙ୍କରେ
ହୋଇଥାଏ ପୁଷ୍ପକଳି,

କେତେ କଢ଼ି ଗର୍ଭ ଆବରଣ ଭେଦି
ବାହାରକୁ ଥାନ୍ତି ବଢ଼ି ।
କେତେ ଅବା ତହୁଁ ରଜପୂର୍ଣ୍ଣ ଅଙ୍ଗେ
ହୋଇଣ ବିକାଶୋନ୍ମୁଖ,
କେବଳ ପ୍ରତୀକ୍ଷା କରୁଥାନ୍ତି ଶୁଭ
ମୁହୂର୍ତ୍ତ ରଜନୀମୁଖ ।
ଦୁଇଗୁଚ୍ଛ ଗୋଟି ବିକସିତ ହୋଇ
ଲମ୍ଭାଇଲେଥାନ୍ତି ପଡ଼ି,
ଦୁଇଗୁଚ୍ଛ ଗୋଟି ଭୃଙ୍ଗ ଉପଦ୍ରବେ
ତଳେ ଶୋଇଥାନ୍ତି ଝଡ଼ି ।
ସ୍ୱହସ୍ତ ବର୍ଦ୍ଧିତ ନଥଲୀର ଦେଖି
ନବପୁଷ୍ପ ଉଦ୍ଗମନ,
ଆନନ୍ଦ ପ୍ରଫୁଲ୍ଲ ହେଲା ଶକୁନ୍ତଳା
ନୟନ ସହିତ ମନ ।
ନଫୁଟୁ ଫୁଟିଲା ପର ହୋଇଗଲା
ପ୍ରସନ୍ନ ବଦନେ ହାସ,
ରହି ନପାରିଲେ ନକରି ସେକଥା
ସଖିଙ୍କ ଠାରେ ପ୍ରକାଶ ।
ଆନନ୍ଦ ଗଦ୍ଗଦେ ବୋଇଲେ ସଖୀଙ୍କି
ଆସ ଆସ ବେଗେ ମିତ,
ଦେଖ ମୋ ନଥଲୀ ହୋଇଯାଇଅଛି
ଆଜ ନବ କୁସୁମିତ ।

ଓଷ୍ଠେ ମଧୁର ହାସ ମିଶିଥାଏ
ବରବର୍ଣ୍ଣିନୀ ବଦନେ,
ଇକ୍ଷୁରସ ମଧ୍ୟେ ନଫୁଟି ଯେସନ
ଶର୍କରା ଥାଏ ଗୋପନେ ।
ବାମା ଅମନ୍ତଣେ କାହିଁ କାହୁଁ ବୋଲୁ
ଆସି ସହଚରୀ ଦ୍ୱୟ,
ଦେଖି ଆରମ୍ଭିଲେ ଚଞ୍ଚଳ ହୁଲି
ନଆଳି ପ୍ରଶାଖାଚୟ ।
କେ ବୋଇଲା ଦେଖି ଏ କଳିକ ଯୁଗ
ଫୁଟିବ ସତେ ସଜନ,
ଅପର ବୋଇଲା ଏହି କୁସୁମ
ଫୁଟିଛି ଗତ ରଜନୀ ।
ପ୍ରିୟମ୍ବଦା ତହିଁ , ବୋଇଲା ସଖୀଙ୍କୁ
ହୋଇଛି ଶୁଭ ସମୟ,
ସହକାର ସଙ୍ଗେ ବନ ତୋଷିଣୀଙ୍କ
କରଦିଅ ପରିଣୟ ।
ଶକୁନ୍ତଳା ହସି ବୋଇଲେ ହବାହ
ସ୍ୱିଦ ମୋତେ ଜଣାନାହିଁ,
ଜାଣିଥିବ ତୁମ୍ଭେ ,ପୁରୋହିତ ହୋଇ
ସେ ବଧୂ ବଥ ବଢ଼ାଇ !
ପ୍ରିୟମ୍ବଦା ତହିଁ ବୋଇଲା କୁମାରୀ
କରଥାଅ ଭେବେ ସତ୍ୟ,
,

ତୁମ୍ଭ ପରଣସ୍ତ ପୁରୋଧା ହେବାକୁ
ଅକ୍ଷୁଣ୍ଣ ଥିବ ମୋ ସ୍ୱତ୍ୱ ।
ସଲଜ୍ଜ ବଦନେ ବୋଇଲେ ଶ୍ରୀମନ୍ତ
କେତେ କଥା ତୁମ୍ଭେ ଜାଣ,
ଉପସ୍ଥିତ କାର୍ଯ୍ୟ ନ କର ପ୍ରଥମେ
ଭବିଷ୍ୟତ କଥାଥଣ ।
ଏହାଶୁଣି ବାଳା ପରଶସ୍ତ ଆଶା
ଅଙ୍କୁରିଲା ନୃପମନେ,
ସେ ଆଶାବଲ୍ଲରୀ ପଲ୍ଲବିତ ହେଲା
ଦକ୍ଷିଣ ବାହୁ ସ୍ପନ୍ଦନେ ।
ମନ ପ୍ରତି ରାଜା ବିବେକ ବୋଇଲା
ସନ୍ଦେହ ମିଶ୍ରି ଭର୍ତ୍ସନେ,
ନିଜ ସ୍ୱାଧୀନତା • ଏବ ଆଜଚୋର
ପରଦ୍ରବ୍ୟ ପ୍ରଲୋଭନେ ।
ମନ ବୋଲେ ଏତ ଆଜର ଗରବ
ଅନଧିକୃତ ରଚନ,
ସ୍ୱଜନତ୍ୟାଜ୍ୟ ନୁହେ ହେଲାଠାରେ ତହିଁ
ପ୍ରଥମ ଦୃଷ୍ଟି ପତନ ।
ବିବେକ ବୋଲଇ ଶୁଣି ନନ୍ଦିନୀଏ
କୂପ ପ୍ରତିବିମ୍ବ ତାରା,
ଜଳ-ମଣିଙ୍କାରେ ଲୁବ୍ଧମୁଗ୍ଧ ଜନ .
ଝଁସାଇଲେ ଯିବ ମାରା ।

ପ୍ରିୟମ୍ବଦା ଚେଡଣେ ବୋଲେ ଏ ପୁନର ?
ଏତସଜ ସୁବେହୃତ,
ସୂଚକ ଏ ମୋତେ ନୃପବର ପ୍ରେମ-
ଲୋଲୁପ ତୋ ଚଳଚିତ୍ତ ।
ଭାବଲେ ନରେଶ ଗଗନ ବନ୍ଧାଣ
ଉଲ୍ଲା ମଣୁଥିଲ ଯାହା,
ସ୍ୱର୍ଗଚ୍ୟୁତ ମୃଦୁ ଜ୍ୟୋତପୁଞ୍ଜ ରାଶି
ପର ଦଶିଲାଣି ତାହା ।
ରାଜକୁଳ ସିନ୍ଧୁ— ସମ୍ଭୂତ ରମାଏ
କଥାରୁ ଯାଉଛୁ ଜଣା,
ଏନୁ ନ ଜାଣିଲ ବନବନୋନ୍ଦନା
ଏ କାରଣେ ବଞ୍ଚନନା ।
ମୂନ କହୁଛନ୍ତି ଅଶ୍ରମେ ଅଛନ୍ତି
ମୁନସୂତା ଶକୁନ୍ତଳା,
ସଖୀବାକ୍ୟ କହେ ବ୍ରଜ ବରଣୀୟା
ସୁକୁମାରୀ ସୁକୁନ୍ତଳା ।
କୌତୂହଳ-ରଥ ଚଢ଼େ ରାଜାମନ
ଏ ରହୋ ବୃକ୍ଷ ତେଦନେ ,
ଏନୁ ରହସ୍ୟ ଏ କୌତୁକ ଦର୍ଶନ
ପ୍ରଲୋଭର ନବେଦନେ ।
ଭାବେ ଭାଗ୍ୟେପଦ ନାହିଁ ଏହସୃଷ୍ଟ-
ସର୍ଣମଣି ରୂପନଧି,

ଝୁରାଇ ମାରବା ପାଇଁ ଅଜାଣକ
ଦେଖାଇଲା ଆଜ ବଧି ।
ଦେଖୁଅଛୁଁ ଯାହା ସତ୍ୟ ନା ସ୍ୱପନ
ଯିବକି ସହସା ଭାଙ୍ଗି,
ସୁଖସୁପ୍ତି ଆଉ ଦେଖି ନ ପାରବ
ହେବ ଦୁର୍ଦ୍ଧର ଶୋଭାଙ୍ଗୀ ।
ଦୃଷ୍ଟି ସିଂହାସନ ତେଜି ଯିବ ଯେବେ
ଏମୋହନ-ରାଜ୍ୟରାଣୀ,
ନୃଷ୍ଟ ସ୍ମୃତ ପ୍ରାଣ— ପ୍ରଜାଙ୍କୁ ସହଜେ
ବପ୍ଳବେ ପ୍ଳାବବ ଆଣି ।
ଅନସୂୟା ତେଣେ ବୋଲେ ପ୍ରିୟମ୍ବଦେ
ଏଥିତୋ ପୁରୋଧାପଣ,
ନ ପାରବ ରହ ଅଛନ୍ତି ଜଥାଲୀ
ସମାଜର ଦ୍ୱିଜଗଣ ।
ତାରକଖଚିତ ଗଗନୁ ଚନ୍ଦ୍ରାତପ
ଲମ୍ବିତ ହେବ ଉପରେ,
ମହୀଧର ଗଣ ଚୌଦିଗେ ରହିବେ
ପ୍ରବାସ୍ତ ଦଣ୍ଡତ କରେ,
ଫୁଟୁଥିବ ବାଣ ବାଂଶବନେ ଉଠୁ-
ଥିବ ଉଲ୍କାରୂପେ ନଭେ,
ହୁଲହୁଲୀ ପଡୁ— ଥିବ ମଞ୍ଜୀବନେ
ମଧୁପ ମଧୁର ରବେ,

ଚକୋର ଚକୋରୀ କରୁଥିବେ ମୋଦେ
ମଙ୍ଗଳ ସଙ୍ଗୀତ ଗାନ,
ସେକାଳେ ନଥାଳୀ କର ରୂଚ କରେ
ସମର୍ପିବେ ପବମାନ ।
ଅନସୂୟା ବାକ୍ୟେ ହସି ଶକୁନ୍ତଳା
ବୋଇଲେ କହିଲ ସତ,
ହସାହସି ହୋଇ ସଖୀଦ୍ୱୟ ଗଲେ
କାର୍ଯ୍ୟେଗୃଙ୍କ ମନୋରଥ ।
ଶକୁନ୍ତଳା ଜଳ ସିଞ୍ଚ ଆରମ୍ଭିଲେ
ନବ ମାଳକାର ମୂଳେ,
ମଧୁକର ଏକ ଉଡ଼ନ୍ତା ଏକାଳେ
ଯେଥିଲା ମାଥାଳୀଫୁଲେ ।
ଉଡ଼ିପୁଣି ବସି ବସେ ବାରମ୍ବାର
ସୁନ୍ଦରୀ ମୁଖ ମଣ୍ଡଳେ.
ବ୍ୟତାନ୍ତନ ହେଲେ ଉଡୁଥାଏ ପୁଣି
ମୁହୁର୍ମୁହୁ ଉର୍ଦ୍ଧ୍ୱ ତଳେ ।
ଦୀର୍ଘଗୁଞ୍ଜୁ ସ୍ୱରେ କେତେବେଳେ ଥରେ
କରନ୍ତାଏ ପ୍ରଦକ୍ଷିଣ.
ଯହିଁ ଯାଏ ତହିଁ ଥାଏ ଚପଳାର
ନୟନ ପଲ୍ଲଙ୍କ ହୀନ ।
କର ଶୃଙ୍ଖଳରି— ଉଠିବୁଲ ବକ୍ଷ-
ଭେଦର କଣ୍ଟ ଗ୍ରୀବାଗ୍ରାଙ୍ଗି,

ଅଳି ଉଡ ଉଡ ନର୍ତ୍ତକୀ ଭଙ୍ଗିରେ
ପଡୁଥାଏ ଚଳାପାଙ୍ଗୀ ।
ଏ ନୃତ୍ୟ ଦର୍ଶନ ଭାଗ୍ୟ ଲଭିବାକୁ
କେହୁତ ନ ଥିଲେ କହ,
ସୁରାଙ୍ଗନା ନୃତ୍ୟ ନୀରସ ମଣନ୍ତେ
ଦେଖିଥିଲେ ସୁରପତି ।
ଲଜ୍ଜା ବିରହିତ ସ୍ୱାର୍ଥବିଜଡ଼ିତ
ବିଦେଶ ବନିତା ନାଚ,
ସାରଲ୍ୟ-ଶୋଭିତ ଲାସ୍ୟକେବେ କାହିଁ
ଦେଖିଥାନ୍ତି ସୁରବୃନ୍ଦ !
ନ ପାଉଲେ ଦେଖି ଅଣିମା ପ୍ରଣୟୀ
ଚଳଚିତ୍ର ବିବସ୍ୱାନ,
ନବ ପଲ୍ଲବିତ ତରୁ ଅନ୍ତରାଳ
ରକ୍ଷାକଲା ତାଙ୍କମାନ ।
କେବଳ ଦ୍ୱିସ୍ତିନା ସାର୍ବଭୌମଙ୍କୁହିଁ
ହୋଇଗଲେ ସ୍ତମ୍ଭୀଭୂତ,
ଦ୍ରବି ନଯାଇ ଯା ପର କଲେ ହୃଦ
ଏକଥା ଏକା ଅଦ୍ଭୁତ ।
ଅର୍ଥୀରେ ସୁନ୍ଦରୀ ସଖୀଙ୍କି ଡାକିଲା
ଆସ ଆସ ପ୍ରାଣମିତ,
ସେ ଗମ୍ଭୀର ବାଣୀ ହୋଇଗଲା ସେହ୍ନ
ଲାସ୍ୟ ସହଚର ଗୀତ,

ବନ୍ଦୁ ପ୍ରତିଧ୍ୱନି ଉଠିଦେଲା ଯେହ୍ନ
ରମ୍ୟସ୍ୱର ସନ୍ଧରଣ,
ଚନ୍ଦ୍ରଚୂଡ ସୁଧା ମୋହନ ମନ୍ତ୍ରେଣ
ମଣ୍ଡି ଦେଲା ହର [illegible]ର ।
ସଜାଇଥିଲା ବା ବୀଣା କାମବଧୂ
ବଜାଇ ଦେଲାଝଙ୍କାର,
ହଜାଇଲେ ରାଜା ଧଇର୍ଯ୍ୟ ମଣିକା
କୁସୁମଧନୁ ଟଙ୍କାର,
ପୁଣି ଡାକଦେଲା ଆସ ସଖୀଥରେ
ହୁସ୍ୱସଦ ମଧୁବ୍ରତ,
ନଆଳୀରୁ ଆସି ବାରଣ ନମାନ
କରୁଛୁ ମୋତେ ବିବ୍ରତ ।
ଜାଣି ନ ଜାଣିଲା ପର ପ୍ରିୟମ୍ବଦା
କହଲ୍ପ କର ବଞ୍ଚନା,
କୁରୁରାଜ୍ୟେ ପୁଣି ତପୋବନମଧ୍ୟେ
ମଧୁବ୍ରତର ଗଞ୍ଜନା ।
ସଜନୀତ ଆମ୍ଭ ନଅଳୀ ମଣିକୁ
ଅଳଏ ଅଛୁଁ ଗହଣେ,
କେଉଁ ଦୁର୍ଜନ ସେ ଦୁଷ୍ମନ୍ତ ପ୍ରତାପ
ପଡ଼ନାହିଁକ ତା କର୍ଣ୍ଣେ ?
ପାଇ ଅବସର ନୃପତି ସତ୍ୱର
ଯାଇ ଶକୁନ୍ତଳା ପାଶ,

ବୋଇଲେ କି ହେଲା କି ହେଲା ସୁଣିଲେ
କେଉଁ ଖଳଦଏ ତ୍ରାସ !
ଭୟନାହିଁ ଭୟ— କାହିଁ ଶୁଣିଲେ
ପୌରବ ଭୂପତି ଥିଲେ,
ଅବଳା ଅରକ୍ଷ କେହି ଉପଦ୍ରବ
କାହିଁକି ସହିବେ ଭଲେ ।
ଦେଖିଲା ସୁନ୍ଦରୀ ସମ୍ମୁଖେ ଅପୂର୍ବ
ସୁନ୍ଦର ଯୁବକ-ବର,
ଅଙ୍ଗବନ୍ତ କରେ ଅନଙ୍ଗ ଅଥବା
ନର ରୂପୀ ସୁଧାକର ।
ବଦନ ଦୀପ୍ତିତ ଥରେ ଚାହିଁ ତାଙ୍କ
ମୁଖକଲା ଅବନତ,
ଲଜ୍ଜକୁଳୀ ଲତା— ଅଙ୍ଗେ କି ସହସା
ଲାଗିଗଲା କାହାହସ୍ତ ?
କି କହିବ କଥା— କରିବ କହନ୍ତି
ଭାବି ନ ପାରିଲା ମନେ,
ବିସ୍ମୟ ଜୀମୂତ ବ୍ୟାପିଗଲା ତାର
ସହସା ହୃଦ ଗଗନେ ।
ଲଜ୍ଜା ସହଚରୀ ସଜାଡିଲେ ବାଳା
ଶରୀର ବ୍ୟସ୍ତବଲ୍କଳ,
ନୟନ ଯୁଗଳ ରହିଲା ନୃପଙ୍କ
ଚରଣ ଦୃଶ୍ୟେ କେବଳ ।

ମଣିଲା ବିଲୋକ ଚଳେ ରଙ୍ଗପାଦ
ସମୁଜ୍ଜ୍ୱଳ ନଖପନ୍ତି,
ମୁଦେ ସ୍ମିତମୁଖୀ ବନ୍ଧୁଜୀବାଧରୀ
କୁନ୍ଦଦନ୍ତୀ ବସୁମତୀ ।
ନୀରବେ ନିଶ୍ଚଳେ ଠିଆହୋଇ କ୍ଷଣେ
ସଖିଏ ପଡ଼ିଲେ ମନେ,
ତାଙ୍କପ୍ରତି ଚାହିଁ ନଚାହିଁ ସେ ଦୁହେଁ
ଉପଗତ ତତକ୍ଷଣେ ।
ସଖୀଦ୍ୱୟ ଦେଖି ଯୁବାମୂର୍ତ୍ତି ଶାନ୍ତ
ଗମ୍ଭୀର ପ୍ରତିଭାନ୍ୱିତ,
ସତେକି ଦୁଷ୍ମନ୍ତ ବୋଲି ଭାବି ମନେ-
ମନେ ହେଲେ ଅଚମ୍ଭିତ ।
ମଧୁରେ ବୋଇଲେ ତପୋବନେ ଆମ୍ଭ
ନାହିଁ କିଛି ଅନ୍ୟଡର,
କରୁଥିଲା ଆମ୍ଭ ପ୍ରିୟସଖୀ ପ୍ରତି
ଉପଦ୍ରବ ମଧୁକର ।
ସମ୍ଭ୍ରମେ ବନସ୍ଥ— ବାକ୍ୟେ ପ୍ରିୟମ୍ବଦା
ଡାକିତାଙ୍କୁ ତରୁତଳ,
ପ୍ରସାରିତ କର— ଯୁଗେ ଦେଖାଇଲା
ଆସନ ଚିକ୍କଣୋପଲ ।
ବ୍ୟସ୍ତେ ନରେଶ ପାଦ୍ୟ ଅର୍ଘ୍ୟପାଇଁ
ସଖୀଙ୍କି କଲା ଇଙ୍ଗିତ,

ଜାଣିତା ନୃପତ    ବୋଇଲେ "ଅତଥି
ହୋଇଅଛୁ ଦୂରେବତ" ।
ମଧୁମୟ ପ୍ରିୟ—    ବ୍ୟବହାର ତୁମ୍ଭ
କରୁଅଛୁ ଆପ୍ୟାୟିତ,
କ୍ଷଣେ ତୁମ୍ଭେ ସ୍ଥିରେ    ବସିଲେ ହେବ ମୋ
ଆନନ୍ଦ ଶତଗୁଣିତ ।
ଅତଥି ତୋଷଣ    ଉପରୋଧ ଛଳେ
ତୋଷେ ତରୁଣୀଏ ରହ୍ନ,
ତୁବସ ତୁବସ    ବୋଲି ଇଙ୍ଗିତରେ
ହେଲେଥରେ କହାକହ୍ନ ।
ବହିଲେ ତନର୍ହେଁ    ପରସ୍ପରେ ହସ୍ତ
ଗୃପି ଗୃପବଲ ଛଳେ,
ଏ ରହସ୍ୟ ହେଉ—    ଥାଏ ଯେତ୍ନେ ନୃପ
ଅଲକ୍ଷରେ କଉଶଳେ ।
ନୃପହିଁ କୌତୁକ    ଦେଖୁଥାନ୍ତ ଜାଣି
ନଜାଣିଲାପରି ବସି,
ତରୁଣୀ ସୁଲଭ    ଅଷ୍ଟ୍ରୁଟ ମଧୁର
ଗୃପଲ୍ୟରେ ତାଙ୍କ ରସି ।
ମୁନିକୁମାରଙ୍କି    କୁଶଳ ବାରତା
ପଚ୍ଛରନ୍ତେ ନୃପବର,
"ଭବଦୀୟ କୃପା    ବଳେ ସର୍ବଶୁଭ"
ସଖିଏ ଦେଲେ ଉତ୍ତର ।

ନରେଶ ବୋଇଲେ ତୁମ୍ଭମାନଙ୍କର
ବଦନର ପ୍ରଫୁଲ୍ଲତା,
କହି ଦେଉଅଛି ପ୍ରଥମରେ ତପୋ-
ବନର ଶୁଭବାରତା ।
ପୁଣି ତୁମଙ୍କର ସମରୂପ ବୟଃ
ଅମାୟିକ ବ୍ୟବହାର,
କରଅଛି ଏହି ପବିତ୍ର ବନକୁ
ମୁଦମୟ ପ୍ରେମାଗାର ।
ପଶୁରିବା ପାଇଁ ମନୋହର ବସ୍ତୁ
ଅତିଥିଙ୍କ ପରିଚୟ,
ସିନ୍ଧୁ ବୀଚପର ଉଠି ପଡୁଥାଏ
ବାଳାଙ୍କ ଚଞ୍ଚୁହୃଦୟ ।
ଅନସୂୟା ସଙ୍ଗେ ପ୍ରିୟମ୍ବଦାଙ୍କର
ଲାଗିଥାଏ ଠାରଠାର,
ବିଲମ୍ବ ନ ସହି ପ୍ରିୟମ୍ବଦା ତହିଁ
ପୁଚ୍ଛିଲା ଆଗ୍ରହ ଭରେ ।
ଧୀରମଣି କେଉଁ ବଂଶଭୂଷା କେଉଁ
ରାଜ୍ୟକର ଅସୁନ୍ଦର,
ଏତେ ଅନୁଗ୍ରହେ ବଲେ ସୁଶୋଭିତ
ଏବନେ ଅର୍ପି ପୟର ।
ବାଲାବାକ୍ୟେ ନୃପ ପ୍ରତିବାଣୀ ଦେଲେ
ପୁରୁବଂଶେ ମୋର ଜନ୍ମ,

ଦୁର୍ଦ୍ଦମ ଦମନ ପରଜା ରଞ୍ଜନ
ତପ୍‌ଗତ କୁଳକର୍ମ ।
ମୃଗୟା ବିହାର ମଧ୍ୟେ ତପୋବନ
ଦରଶନେ ହେଲା ମନ,
ତପୋବନେ ଭ୍ରମୁ ରାଜନାମ ଶୁଣି
କରଅଛ ଆଗମନ ।
ଦେଖୁଅଛୁଁ ସଖୀ— ଏ ଯେ ତୁମ୍ଭେ ଏହି
ତପୋବନ ଅଲଂକାର,
ତପସ୍ୟାର ଫଳ ରୂପିଣୀଙ୍କ ପୁଣି
ତପସ୍ୱିନୀ ବ୍ୟବହାର ।
ବିସ୍ମୃତ ସହିତ କୌତୂହଳ ଆସି
ଜାତହେଉଛି ମୋ ମନେ,
ତବ ବ୍ରହ୍ମର୍ଷି କଣ୍ୱ ମହାଋଷି
ପୁତ୍ରୀପାଇଲେ କେସନେ ?
ଶୁଣି ପ୍ରିୟମ୍ବଦା କହିଲା ଏକଦା
କଉଶିକ ତପୋଧନ
କଠୋର ତପସ୍ୟା କରିବାର ଦେଖି
ଶଙ୍କିଲେ ମେଘବାହନ ।
ତପୋଧନଙ୍କର ତପୋଧନ ହରି
ନେବାପାଇଁ କଉଶଳେ,
ମଘବା ପ୍ରେରଣେ ମେନକା ସୁନ୍ଦରୀ
ଆସିଲେ ଅବନୀ ତଳେ ।

ତାଙ୍କ ଯେତେବେଳେ      ରାଜର୍ଷି ପ୍ରବର
ଅମୋଘ ତେଜଃ କ୍ଷେପଣ,
ଶକୁନ୍ତଳା ନବ—      ରମଣୀୟ ଉ-
ଲତା ତହୁଁ ଉତ୍ପନ୍ନ ।
ତାତ କଣ୍ୱଙ୍କର      ଯତନେ ଏବତନ
ହୋଇଅଛି ପ୍ରବର୍ଦ୍ଧିତ,
ମହର୍ଷି ଦେଖିଲେ      ଅନୁରୂପ ପାତ୍ର
ବାଳା ଦେବ ସମର୍ପିତ ।
ସେ ବାଣୀ ବସନ୍ତେ      ନୃପ ଆଶାତରୁ
ହୋଇଗଲା କୁସୁମିତ,
ଜାଣିଲେ ସନ୍ତୋଷେ      ହୋଇଥିଲା ଯାହା
ଅନଳ ଖଣ୍ଡ ପ୍ରଚଣ୍ଡ ।
ସ୍ୱର୍ଗୀୟ ଲତାର      ନବ କୁସୁମେ
ସ୍ୱର୍ଗୀୟ ସୁଷମା ନ୍ୟସ୍ତ,
ସ୍ୱର୍ଗୀୟ ସୌରଭ      ସ୍ୱର୍ଗୀୟ ମାଧ୍ୱିକ
ଅନାଘ୍ରାତ ଅଚୁମ୍ବିତ ।
ନୃପମୁଖେ ଦିଏ      କହ୍ଲାର ତରୁଣୀ
ନୃପ ଦୃଷ୍ଟି ଥିଲେ ଅନେ,
ଅବର୍ତ୍ତିଲେ ନୃପ—      ଚନ୍ଦ୍ରଭାଗ ଦଶେ
ବେଟଶେ ଅପସାର ଆଣେ ।
ଲଜ୍ଜାବଶେ ଉଠି—      ଗଲେ ଦେବ ବୋଲି
ଅତିଥିଙ୍କ ଅବମାନ,

ଗମନ ଭଙ୍ଗୀ ପ୍ରାନ୍ତେ ବହିଥାଏ
ଯେହ୍ନେ ମନକାଉ ଅନ ।
ସପ୍ତପର୍ଣ୍ଣ ପତ୍ର ଶୀଘ୍ର ଗଣିଗଣି
ନତ କରଥାଏ ମୁଖ,
ମଧ୍ୟେ ଥରେଥରେ ନୃପଙ୍କୁ ଅପାଙ୍ଗେ
ଚାହିଁ ଲଭୁଥାଏ ସୁଖ ।
ନୃପ ଦେଖୁଥାନ୍ତି ପୁନଃ ପୁନଃ ତାର
ଦବଶ୍ରଭାପୂର୍ଣ୍ଣ ମୁଖ,
ମୌନ କରଥାନ୍ତି ଅଲାପନ ତହିଁ
ବଦନ ଦର୍ଶନ ମୁଗ୍ଧ ।
ଅପୂର୍ବ ଅଳକ ମଣ୍ଡିତ ଲଲାଟ
ସୀମନ୍ତରେଖା ସରଳ,
କଳ ଅଳ ନୃମ୍ଣ— ଶୋଭିତ ବାମାର
ଗଣ୍ଡ ଶତଦଳ ଦଳ ।
ସୁନୀଳ ନବୀନ ଭ୍ରୂଲତା ପରଶି
କପାଳ କପୋଳ ସୀମା,
ପକ୍ଷ୍ମ ବଶୋଭିତ ନୟନ ଯୁଗଳ
ଦଇର୍ଘ୍ୟେ ରଖେ ବଡ଼ିମା ।
ସୁଗଠିତ ନାସା ବର୍ତ୍ତୁଳ ଚବୁକ
ମନୋହର ଓଷ୍ଠାଧର,
କଗୀଶା ମୋହନେ ସୁଷମା ତବାନ୍ଧ
ଲଗିଥାନ୍ତି ପରସ୍ପର

ଶ୍ରବଣ ଯୁଗଳ ମୁଗ୍ଧ-ଶୋଭି ସ୍ୱନେ୍ୟ
କରିବାକୁ ଆକର୍ଷଣ;
ସୀମା ପ୍ରାନ୍ତେ ଥାଇ ଉଭୟ ଦିଗରୁ
କରୁଥାନ୍ତି ଆକ୍ରମଣ ।
ନୃପତି ନୟନ ଅନ୍ତର୍ଭୂକ୍ତ କଲେ
ଶୋଭାଗ୍ରାହିଣି ଶ୍ରେଣୀ,
ନୃପନେତ୍ର ହେଲା ଯେ ଶୋଭା ସାଗର
ତରଙ୍ଗେ କ୍ଷୁଦ୍ର ତରଣି ।
ଥରେ ଥରେ ମିଶା— ମିଶି ହୋଇଯାଏ
ଦେଉନ୍ଦର ଖଣ୍ଡକେଶ,
ଅନ୍ତେବତ କରେ ଚମକାଇ ପ୍ରେମ
ସୌଦାମିନୀ ହୃଦଦେଶ ।
ଦେଖିବାକୁ ଅଙ୍ଗ— ଲାବଣ୍ୟ ନୃପଙ୍କ
ନ ମିଳଇ ଅବସର,
ଚନ୍ଦ୍ର ନତମୁଖୀ ବାମା ଦେଖୁଥାଏ
ତାହାଙ୍କ ଚାରୁ ପୟର ।
ଲାଗିଥାଏ ଯାହା ପାଦରେ ଆଶ୍ରମ
ପବିତ୍ର ପଦ୍ମା ଧୂଳି,
ଯୋଗିଦେବ ଯେତ୍ତେ— ଦେବାପାଙ୍ଗ କରୁ-
ଥାଏ ତରୁଣୀ ମଣ୍ଡଳୀ ।
ବାଣ୍ଡାକଲ୍ପ ମନେ ମସ୍ତକେ ଭଲକ
ଦେଇ ଅତଅ ସଞ୍ଚାର,

କଳ୍ପନା କରନ୍ତି ସଖୀମାନେ ଯେବେ
ତହିଁପାଇଁ ବଳାତ୍କାର ।
ଏକାଳେ ସହସା ବନଗଜ ଭୟ
ଉଠିଲ ପଡ଼ିଲା ବନେ,
ଉଠିଲେ ଚମକି ଅନାଇ ସଶଙ୍କ
ଚପ୍ରଚଞ୍ଚଳ ନୟନେ ।
ପୁଣିକେ କହିଲ ଦୁଷ୍ମନ୍ତ ନରେଶ
ମୃଗୟା ବିହାରେ ଆସି,
ତପୋବନ ମଧ୍ୟେ ବଞ୍ଚେ କରଛନ୍ତି
ସାବଧାନ ବନବାସୀ ।
ଅଶ୍ୱଗଜ ଦଳ— ବଳ ଅଗଣିତ
ବନେ ଆସିଲେଣି ମାଡ଼ି,
ଭୟେ ଜୀବଗଣ ଇତସ୍ତତଃ ହୋଉ-
ଛନ୍ତି ଘରବାର ଛାଡ଼ି ।
ଅଶ୍ୱଖୁରୋଥିତ ଧୂଳି ପଟଳରେ
ଆଚ୍ଛନ୍ନ ହେଲାଣି ବନ,
ସେ ଧୂଳି ପଟଳ ବନତରୁ ଗ୍ରାସି
ଉଠୁଛି ଭେଦ ଗଗନ ।
ଦେଖି ଦେଖି ଏକ କୁରଙ୍ଗ ଶାବକ
ଦଉଡ଼ ଆସି ଚଞ୍ଚଲେ,
ନିଅରେ ଧୋଇଗଲା ଶକୁନ୍ତଳାଙ୍କର
ଲମ୍ବିତ ବଲ୍କଳାଞ୍ଚଳେ ।

ପୁଣି ଶୁଣାଗଲା ପ୍ରକାଣ୍ଡ ମାତଙ୍ଗ
ହେଉଅଛୁ ଭୟପ୍ରଦ,
ପ୍ରକାଣ୍ଡ ପାଦପ ଶାଖା ଭଙ୍ଗ ଭଙ୍ଗ
ଭାଙ୍ଗି ଗଲ୍ଲଣିତା ଛଦ ।
ସସମ୍ଭ୍ରମେ ନୃପ ଗାତ୍ରୋତ୍ଥାନ କରି
ଉଦ୍ୟତ ହେଲେ ଗମନେ,
ବନ୍ୟ ତରୁଣୀଙ୍କ ସଙ୍ଗ ଛାଡ଼ିବାକୁ
ଖେଦ ହେଉଥାଏ ମନେ ।
ସଖୀଙ୍କି ବୋଇଲେ "ଯାଉଛୁ ଦେଖିବ
ବରୂପ ଆସି ବାରଣୀ,
ତପୋବନେ ପଶି ଉପଦ୍ରବ କରେ
କରିବ ତା ନିବାରଣ
ଧୃଷ୍ଟତା ମୋ ମନେ ନ ଧରିବ ବୋଲି
ଭରସା କରେ ମୋ ମନ;
ତଥାପି ଅଚିରେ ଅସି ପୁଣି ତାହା
କରାଇ ନେବ ମାର୍ଜନ" ।
ସଖୀଏ ବୋଇଲେ ଅତିଥି ସତ୍କାର
ନକରି ହେଉଅଛୁଁ ମ୍ଲାନ,
ପୁନ ଦର୍ଶନ ନ ଦେଲେ ଆର୍ଯ୍ୟ ହେ
ହୃଦ ହେବ ଦୁଃଖପୂର୍ଣ୍ଣ ।
ନୃପତି ବୋଇଲେ ଏପରି କଥାକୁ
ନକହ କହଇ ଆଉ,

ତୁମ୍ଭ ପ୍ରୀତିପୂର୍ଣ୍ଣ ବ୍ୟବହାର ଭୁଲି
ନ ପାରିବି ଜୀବଥାଉଁ ।
ଯେଣୁ ମାଗୁଅଛି ମୁହିଁ ତନୟାଙ୍କ
ନିକଟରୁ ପ୍ରୀତିଗୁଣ,
ବନ୍ଧକ ନ ଦେଲେ ସ୍ୱରୂପେ ବିଶ୍ୱାସ
କରିବ କି ଦେଖି ଗୁଣ ।
ଏହା କହି ହେମ— ଅଙ୍ଗୁରୀୟ କାଢ଼ି
ଅଙ୍ଗୁଳିରୁ ତରତରେ,
ଶକୁନ୍ତଳା କର— ଧରି ଅଙ୍ଗୁଳିରେ
ମଣ୍ଡି ଦେଲେ ପ୍ରେମଭରେ ।
ତାକଲେ ନୃପତି ତରତର କିମ୍ପା
ପକ୍ଷିଙ୍କୁ [illegible] ମନ,
ପ୍ରଧାବିତ ରଥ ପକ୍ଷିଙ୍କୁ ଉଡ଼ାଇ
ଧୂଳିଧ୍ୱଜ ଯେସନ ।
କତ ଅରଣ୍ୟର [illegible] ମୁଖରେ ପରାଣ
ଦେଉଥାଏ ପୁଲକିତ,
ପୁଲକି ବଳରେ ବଳାହିଁ ତାଙ୍କର
ହୋଇଗଲା କବଳିତ ।
ଦଶୀଯୁଗ ଧରି ଶକୁନ୍ତଳା କର
ମୁଦ୍ରିକା କଲେ ଦର୍ଶନ,
"ଦୁଷ୍ମନ୍ତ" ନିବର୍ଣ୍ଣି ଧରିଥିଲା ସେହି
ନବ ପ୍ରେମ ନିଦର୍ଶନ ।

ପରସ୍ପର ମୁଖ ଚାହିଁ ଚାହିଁ ହେଲେ
ଉଭୟେ ହୋଇ ଚକିତ;
ଶକୁନ୍ତଳା ପ୍ରାଣ ଅନ୍ତରଳା ଦେଶେ
ନ ହେଲା ତାଙ୍କୁ ବିଦିତ ।
ସେ ଏକ ନବୀନ ଭାବସ୍ରୋତବେଗେ
ଭାସିଗଲା ତାର ପ୍ରାଣ
କହି କହି "ମାନ୍ୟ କୁମାରଙ୍କୁ" ବୋଲି
ସଖୀଏ କଲେ ପ୍ରୟାଣ ।
ସଖୀଙ୍କ ସଙ୍ଗରେ ଚାଲିବାକୁ ବାଳା-
ପାଦରେ ନ ହେଲା ଶକ୍ତି,
ଚାହିଁ ଚାହିଁ ଦୃଷ୍ଟି ଆକର୍ଷିତ ହେଲା
ଯୁବକ ମୁଖ ପ୍ରତି ।
କୁରୁବକ କଣ୍ଟା ବିନ୍ଧିଲା ବୋଲି
ସଖୀଙ୍କି କହିଲା ଛଳି,
ପ୍ରିୟମ୍ବଦା ବୋଲେ କୁରୁବକଶାଖା
ମିଳାଇ ଗଲା କି ଚାଲି ?
ନ ବଶିଲେ ରାଜା ବାଳାମନେ ଜନ୍ମ
ହୃଦରୁ ନ ହେଲେ ଦୂର,
ଜନ୍ମିଗଲା ବଳେ ଅବଳା ଜୀବନେ
ନବୀନ ପ୍ରଣୟାଙ୍କୁର ।

---

# ବେଦବ୍ୟାସ

* ବେଦବ୍ୟାସ ଗିରି ମଞ୍ଜୁ କୁଞ୍ଜମୟ,
ବେଦବ୍ୟାସ ପୂତ ଜନମ ନିଳୟ ।
କାନନ କୁସୁମ ପଲ୍ଲବ କାନନ—
ମଧ୍ୟରେ ଉଜ୍ଜ୍ୱଳେ କରିଛୁ ଆସନ ।
ପୂର୍ବଭାଗେ ତାର ସୁଢ଼କା କନ୍ଦର,
ବିବିଧ ପାଦପ ପ୍ରସୂନେ ସୁନ୍ଦର ।
ଭାରତ ମଣ୍ଡଳେ ଯଥା ନୀଳାଚଳ,
ହୋଇଅଛୁ ପୁଣ୍ୟ ନିଚୟେ ଉଜ୍ଜ୍ୱଳ ।
କଣ୍ଠାମାଳଗିର ପୁଷ୍ପ ବନ୍ଧୁଲତା-
ସଙ୍ଗେ ବାନ୍ଦେରତ ତହିଁ କୁଞ୍ଜ ଲତା ।
ନିଜ ନିସ୍ଥାଙ୍କ ବିଗ୍ରହ ଲଗାଇ,
ଦର୍ଶକଙ୍କୁ ଅଗ୍ରେ ଦେଉଛୁ ଦେଖାଇ ।
ଜମ୍ବୁନଦ କାନ୍ତି ଗିରୁ ଗନ୍ଧାପୂଳ,
ଶୋଭାବୃଦ୍ଧି ପାଇଁ ହୋଇଛୁ ପ୍ରଫୁଲ୍ଲ ।
ଶ୍ୟାମ କଗଳସ୍ତ୍ର ପନ୍ତଲେ ତା ଦୃଶ୍ୟ,
[illegible] ଧ୍ୟତାରକା ସଦୃଶ ।

---

* ଯୋପୁର ଗଡ଼ର ନାଗଲ୍ କନିଦାର ଟିନ ଏକ ପର୍ବତ ।

କେତେ ଅତିଥିଙ୍କ ନାମ-ମାଳା ବହି,
ସାଧୁଭାବେ ଅଛି କ-ପାଦପ ରହି ।
ଯା କରେ ହୋଇଛି ଖୋଦିତ ବିଗ୍ରହ,
ତା ନାମ କହୁଛି ପ୍ରକାଶି ଆଗ୍ରହ ।
ନ ହୋଇ ବିଶାଳ ଉର୍ଦ୍ଧ୍ୱେ ଟେକି ମୁଣ୍ଡ,
ଶାଳ ତରୁଗଣ ହୋଇଛନ୍ତି ରୁଣ୍ଡ ।
ଦ୍ରୁମ ଭ୍ରମର ଛାଳନ୍ତି ସେ ସନ୍ତେ,
ଅତିଥି କୁଞ୍ଜରେ ଯେ ତହିଁ ବସନ୍ତେ ।
କର୍କଶ କଣ୍ଟକ ତିନ୍ଦୁକ ପାଦପ,
ଯଥା ଦେଉଅଛି ଉଚ୍ଛେକର ଦର୍ପ ।
ବାହାରେ କର୍କଶ ଦିଶିଲେ କହେବ,
ଭିତରେ ଯେ ରହିବ ସେହୁ ଶାନ୍ତ ଦେବ ।
ମଧ୍ୟେ ମଧ୍ୟେ କେଳ କଦମ୍ବ ନିଚୟ,
ଯହିଁ ମଣ୍ଡି ଛନ୍ତି ରମ୍ୟ ଶିଳୋଚ୍ଚୟ ।
ପ୍ରାନ୍ତେ ସମସ୍ତ ହେଲେ ସମାଗତ,
କୃଷ୍ଣମାର୍ଗ ଧରି କରନ୍ତି ସ୍ୱାଗତ ।
ତିଚ ପାଦେ ଶିର ଗରଭ ସଂଯୁତ,
ଜଳେ ପୂର୍ଣ୍ଣ ବେଦବ୍ୟାସ ଏନେ ପୂତ ।
ସରସ୍ୱତୀ କୃଷ୍ଣ ବହେ ସରସ୍ୱତୀ,
କ୍ଷୀଣାଙ୍ଗୀ ହୋଇଲେ ଯଥା ସତ୍ୟବତୀ ।
ନିକଟେ ଶଙ୍ଖ ସ୍ରୋତ ସଙ୍ଗ ପାଇ,
ଦେଉଅଛି ନିଜ ଜୀବନ ମିଶାଇ ।

ସମ୍ପୁଟେ ଭାରତୀ ଉତ୍କଳେ ଯେସନ,
ମିଶ୍ରିତ କରନ୍ତୁ ନଜ ଅପନଘ ।
ଉତ୍ତର ଦଗରୁ ବହୁ ଆସି ଶଙ୍ଖ,
ଏଠାରେ ଲଭନ୍ତି କୋଇଲର ଅଙ୍କ ।
ଏକ ଅଙ୍ଗେ ଦୁହେଁ ଯାଉଛନ୍ତି ବହି,
ପବନ "ବ୍ରାହ୍ମଣୀ" ନାମଟିକୁ ବହି ।
ବିମିଶ୍ରିତ ହେଲେ ଭିନ୍ନ ବରଣ,
ଭିନ୍ନନାମ ସଦା କରନ୍ତି ଧାରଣ ।
ନଦୀରୁ ଦେଖିଲେ ବ୍ୟାସ ଜନ୍ମବସ୍ତି-
ସାନୁଦୃଶ୍ୟ ହୁଏ ମନୋଦୁଃଖ ହର ।
ଥିଲେହେଁ ଅନେକ ଗୁଳ୍ମ ମହୀରୁହ,
ଆବାଲ ବୃଦ୍ଧର ନୁହେ ଦୁରାରୋହ୍ୟ ।
ସରଳ ଶଯ୍ୟାରୁ ସାନୁବକ୍ଷ ଯାଏ,
ସୁରମ୍ୟ ସୋପାନ ପଙ୍କ୍ତି ଶୋଭାପାଏ ।
ତହିଁ ସମତଳେ ମଣ୍ଡପ ଶୋଭିତ,
ତହିଁ ଉର୍ଦ୍ଧ୍ୱେ ପୁଣି ସୋପାନ ଉତ୍ଥିତ ।
ବ୍ୟାସ ଜନ୍ମସ୍ଥଳେ ପ୍ରଶସ୍ତ ପ୍ରାଙ୍ଗଣ,
ଛାୟା ଦେଉଛନ୍ତି ତାକୁ ତରୁଗଣ ।
ତହିଁ ଉପରରୁ ସୋପାନରେ ଚଳ,
ସାନୁଶିର ପ୍ରାୟ ନିମ୍ନ ସମତଳ ।
ପୁଣି ସୋପାନରେ ହୁଅ ସମୁତ୍ଥିତ,
ଶିଖର ମଣ୍ଡପେ ହେବ ଉପସ୍ଥିତ ।

ଏମନ୍ତ୍ରପ ଯାନ୍ତୁ ମୁକୁଟ ସଦୃଶ,
ଦର୍ଶକ ନୟନେ ଦିଶୁ ହୁଏ ଦୃଶ୍ୟ ।
ବେଦବ୍ୟାସଙ୍କର ଲଭି ଧୂପ୍ରସାଦ,
ଅନୁଭୂତ ସବ ଚୈତନ୍ୟ ପ୍ରସାଦ ।
ପ୍ରାସାଦର ପନ୍ତ୍ର ସାଧାରଣ ଅର୍ଥେ,
କରଦେଇଛନ୍ତି ସାଧାରଣ ଅର୍ଥେ ।
ଜନଗଣ ମୁଗ୍ଧ ପାଇ ସେ ସମ୍ବାଦ,
କିଏ ବା ନଦେବ ତାଙ୍କୁ ଧନ୍ୟବାଦ ।
ଯାହାକରେ ହୋଇପାରେ ଲୋକହିତ,
ସ୍ୱାର୍ଥ ନ ଥିଲେହେଁ କରିବା ବିହିତ ।
ଲୋକହିତ—କର୍ମ ମାନବ ଧରମ,
ତାହା ସିନା ତାର ଉଦ୍ଦେଶ୍ୟ ପରମ ।
ଲୋକହିତେ ଯେଉଁ ଲୋକ ଧନ-ପଣ-
ମନ ନିୟୋଗରେ ହୁଅନ୍ତି କୃପଣ ।
ସେମାନେ କେବଳ ନିଜ ପାଳିନର,
ଧର୍ମ୍ମ ଜଗତର ଅପୁଚ୍ଛ ବାନର ।
ଏଠାରେ ମୋ ସ୍ମୃତି କଲା ସୁଧାପାନ,
ଚଢ଼ି ବୃନ୍ଦାରକା ଶିଖରୀ ସୋପାନ ।
ମନଗଲା ତାର ତାରଣୀ ପଦ୍ମରେ,
ପାବଚ୍ଛ ପଥରେ ଉଠି ନିର୍ଭୟରେ ।
ତହୁଁ ଜବେ ଯାଇ ପାପ କ୍ଷୟସାଟ,
ସୋପାନେ ନ୍ୟଗ୍ରୋଧ ତଳେ କଲା ନାଟ ।

ନ ପାରିଲା ପଶି ନୃସିଂହ ନାଥରେ,
ଗ୍ରୀଷ୍ମକାଳେ ଯହିଁ ଶୀତେ ତନୁ ଥରେ ।
ଦୁର୍ଭେଦ୍ୟ ଗିରି ଚଢ଼ିବାକୁ ଡର,
ଅତଏ ବିଶେଷେ ଧରେ ପୁଣିକର ।
ନାରଙ୍ଗ ରଙ୍ଗରେ ମନୋହର ବନ,
ତରୁରାଜ ଉଠି ଚୁମ୍ବନ୍ତି ଗଗନ ।
କରିବାକୁ ତଳ ଗିରି ବିଚରଣ,
ଦୂରୁ ପ୍ରଣମିଲା ନୃସିଂହ ଚରଣ ।
ପ୍ରଣମିଲା ହରଶଙ୍କର ପଦ୍ମରେ,
ବାହୁଡ଼ି ଆସିଲା ଘୋର ବସୁନ୍ଧରେ ।
ମୂକୁଟ-ମଣ୍ଡପେ ଅସ ଏବେ ଯିବା,
ବ୍ୟୋମଯାନ ଚଢ଼ି ସୁଖରେ ମଜ୍ଜିବା ।
ତହିଁ ଥାଇ ଥରେ ବୁଲାଇ ନୟନ,
ମନେକର ନବ ଭାବ ଅନୁଧ୍ୟାନ ।
ଦୂରେ ଉତ୍ତରରେ ଧରାଧର ରାଜ,
ପ୍ରାଚୀର ପରାଏ ଅଛନ୍ତି ବିରାଜ ।
ଚନ୍ଦ୍ରବିମ୍ବ ଶତ ହୋଇଛି ରଚିତ,
ପାପ ଆକ୍ରମଣୁ ହେବାକୁ ରକ୍ଷିତ ।
କ୍ଷଣେ ରହ ପୁଣି ଘୁଞ୍ଚାଇ ଚରଣ,
ଦେବୀ ପତାଙ୍ଗରେ କର ବିଚରଣ ।
ନିଶ୍ଚୟେ ମାନସେ ହେବ ଅଭିଳାଷ,
କରିବାକୁ ପଥ ପ୍ରଦୋଷେ ବିଳାସ ।

ପୃଷ୍ଠଭାଗେ ଦେଖ ସୁରମ୍ୟ ଅଟବୀ,
ଘନ କଣ୍ଟକମୟ ତରୁ ଶ୍ୟାମଚ୍ଛବି ।
କୃଷ୍ଣସାରଙ୍କର ପ୍ରିୟଲୀଳାସ୍ଥଳ,
ବିହରନ୍ତି ଯହିଁ ବିହଙ୍ଗପଟଳ ।
ମଧ୍ୟେ ପୁଷ୍କରଣୀ କାନନ ଦର୍ପଣ,
ଦେଖି କର ମନ ନୟନ ତର୍ପଣ ।
ଜଳେ ଚାରୁ ଶ୍ୱେତ ରକତ କୁମୁଦ,
ଫୁଟି ଦେଉଛନ୍ତି ମାନସକୁ ମୁଦ ।
ସେ କୁସୁମ ଜହିଁ ଥିବାରୁ ଅଲପ,
ଭାବୁକ ହୃଦୟେ ପକାନ୍ତି ଡଳପ ।
ତାପରେ ଉତ୍ତର, ପୂର୍ବ, ଦକ୍ଷିଣ,
ଦୃଶ୍ୟରେ କରାଅ ଦୃଷ୍ଟି ପ୍ରଦକ୍ଷିଣ ।
ସାନୁତଳେ ଦେଖେ ଶ୍ରୀଚନ୍ଦ୍ରଶେଖର,
କୁସୁମବାଟିକା ମଧ୍ୟେ ମନୋହର ।
ସମୀପେ ଶଙ୍ଖର ଅଗଭୀର ଧାର,
ନମୁଛ ଶଙ୍କର ପଦେ ବାରମ୍ବାର ।
ତାପରେ କୋଇଲ ପ୍ରବାହ ଗମ୍ଭୀର,
ଗର୍ଭସ୍ଥରେ ଯହିଁ ବିହରେ କୁମ୍ଭୀର ।
ମଧ୍ୟେ ଶୁଭ୍ର ବାଲି ତ୍ରିକୋଣ ପୁଳିନ,
କ୍ରମ-ସୂକ୍ଷ୍ମ ଶିର ଜଳେ କରେ ଲୀନ ।
ପୃଷ୍ଠଭାଗେ ତାର ତ୍ରିକୋଣ ଆକାର,
ବନ ଭୂମି ଅନ୍ତରୀପ ପରକାର ।

ହୃଦୟ ପାର୍ଶ୍ୱରେ ଶୁଭ୍ର ବେଦି ତୁଙ୍ଗ,
ବସନ୍ତି ଯେସନେ ଚିଦାତ୍ମମାନବୀ ।
ଜୀବ ବ୍ରହ୍ମ ପ୍ରାଣେ ଚରଣ ଯୁଗଳ,
କେବେ ଦୂରୁଁ ବନ୍ଧୁ ଅସି ଅନର୍ଗଳ ।
ଏକ ହୋଇ ଏହି ପବିତ୍ର ଧାମରେ,
ଅଭିଖ୍ୟାତ ହେଲେ ବ୍ରାହ୍ମଣୀ ନାମରେ ।
ଜବା ଶଙ୍ଖ ପୁଂସ କୋଇଲି ଯୋଷିତ,
ସଙ୍ଗମେ ବ୍ରାହ୍ମଣୀ ହୋଇଛି ଜନିତ ।
ଅମର୍ତ୍ତ୍ୟ ଫଳର ହେବାପାଇଁ ସାକ୍ଷ,
ପାଷାଣ ସ୍ୱରୂପ ହୋଇ ସହସ୍ରାକ୍ଷ ।
ଶଙ୍ଖ ଗର୍ଭେଛନ୍ତି ଯାଇ ସନ୍ନିକଟ,
ଦେଖ ତେଣେ ସବୁ ହେଉଛି ପ୍ରକଟ ।
ତନ୍ନୁଁ ଦୃଷ୍ଟି ଯେବେ ବନଶିରେ ଚଳେ,
ଦେଖିବ ଅଦୂରର ବ୍ରାହ୍ମଣୀ ଅଗଲେ ।
ତରୁ ବକ୍ଷେ ତରୁ ତରୁ ତାର ବକ୍ଷ-
ଭେଦ ଉଚ୍ଚ ହୋଇଛନ୍ତି ଲକ୍ଷ ଲକ୍ଷ ।
ଯାସଙ୍ଗେ ଯାହାର ନାହିଁ ତାରତମ୍ୟ,
ସେ ଦଣ୍ଡୁଛି ଉଚ୍ଚେ ଥାଇ ଉଚ୍ଚତମ ।
ଏହିପରି ସେନା ସଂସାର ଗହନେ,
ଉଚ୍ଚ ଉଚ୍ଚତର ହୋଇଛନ୍ତି ଜନେ ।
ମଧ୍ୟେ ରହିଅଛି କାଜଳ ପଥର,
ମାନସୀ ଅନ୍ଧ ବ୍ରାହ୍ମଣୀ ପଥର ।

ବୃଷ୍ଟି ବିନା ଯେବେ ହୁଅନ୍ତି ଆକୁଳ,
ଅନାର୍ଯ୍ୟ କୃଷକ ସୀମନ୍ତିନୀ କୁଳ ।
ସେହି ମୂରତିର କରନ୍ତି ଅର୍ଚ୍ଚନା,
ବନ ଫୁଲେ କରି ସୁବେଶ ରଚନା ।
ମଖାଇ ସିନ୍ଦୂର କଜ୍ଜ୍ୱଳ ହଳଦ,
କର୍ଦ୍ଦମ ଗୋମୟ ଦେଇଥାନ୍ତି ଲଦ ।
ତାହେଲେ ଅଚିରେ ବରଷି ବାସବ,
ପ୍ରକ୍ଷାଳନ କରି ଦିଅନ୍ତି ସେ ସବୁ ।
ଏଣୁ ସେ ମୂର୍ତ୍ତିକି ବୋଲନ୍ତି ଅହଲ୍ୟା,
ଇନ୍ଦ୍ର ମନ-ଲୌହ ଚୁମ୍ବକ ଅବଳା ।
ମୋହନାର ଗୃହିଁ ପାଷାଣ ମୂରତି,
ପାଶେ କି ପାଷାଣ ରୂପ ସୁରପତି ?
ଅଦ୍ୟାପି ଇନ୍ଦ୍ରଙ୍କ ଯାଇନାହିଁ ଆଶ,
ସୁରନାଥ ହୋଇ ସ୍ୱଭାବର ଦାସ ।
ସମ୍ମୁଖରେ ଦେଖ ଗୌତମ ପର୍ବତ,
ବନ ଲକ୍ଷ୍ମୀଙ୍କର ଶ୍ୟାମ ଚମୂବତ ।
ତା ପଛକୁ ସାନୁ ଯୁଗଳ ବର୍ତ୍ତୁଳ,
ମୁଣ୍ଡଶାଳୀ ସହ ଦେଉଳର ତୁଳ ।
ତାଙ୍କ ପଛେ ରାଜେ ପରାଶର ଗିରି,
ଧରି ଦୃଷ୍ଟିରମ୍ୟ ନୀଳବର୍ଣ୍ଣ ଶିରୀ ।
ଥିଲା ପରାଶର ପୁଣ୍ୟାଶ୍ରମ ଖ୍ୟାତ,
ତେଣୁ ସେହି ନାମେ ହୋଇଛି ଆଖ୍ୟାତ ।

ଏହିଠାରୁ ଆସି ପରାଶର ଯତି,
ଭେଟିଲେ ବ୍ରାହ୍ମଣୀ କୂଳେ ସତ୍ୟବତୀ ।
ସତ୍ୟବତୀ ପିତା ଥିଲେ ଦାସ ପତି,
ପାଶେ ରହିଅଛି ତାହାଙ୍କ ବସତି ।
ନାହିଁ ସିନା ତାଙ୍କ ନିବାସ ଆଗାର,
ରହିଅଛି ବାସଭୂମି ସ୍ତୂପାକାର ।
ଚତୁର୍ଦ୍ଦିଗେ ତାର ବେଢ଼ିଛି ପଙ୍କଣା,
ନିକଟକୁ ଯାଇ କର ତା ପରୀକ୍ଷା ।
ଅଦ୍ୟାବଧି ଦାସ ବଂଶଧରମାନେ,
ଅଛନ୍ତି ଏ ରାଜ୍ୟେ ବହୁ ପରିମାଣେ ।
ଗଙ୍ଗାଖାଇ ଦେଖି ଯିବ "ବୋଲ" ସ୍ଥାନ,
କର୍କରେ ତୁଲ୍ୟ ବ ପ୍ରକାଣ୍ଡ ପାଷାଣ ।
ଦେଖ ଗୋବର୍ଦ୍ଧନ ପ୍ରଭାସ ପୁଷ୍କର,
ଯାହାଙ୍କ ମହତ୍ତ୍ୱ କଳନ ଦୁଷ୍କର ।
ପୁରାଣରେ ଅଛି ଯେରୂପ ଉଲ୍ଲେଖ,
ଆଜ ବି ସେମାନ ସେହିପରି ଦେଖ ।
ପ୍ରତାପ-ପ୍ରଦତ୍ତ ପ୍ରତିଚନ୍ଦ୍ର ଲଭି,
ସ୍ଥାନକୁହିଁ ବଡ଼ ଦେଖିଥାନ୍ତି କବି ।
ବ୍ରାହ୍ମଣୀ ନଦୀର ଅପ୍ରଶସ୍ତ ଧାର,
କୁମାରୀ ନାଈକା କରୁଥିଲ୍ଲପାର ।
ମୁନି ଦାସସୁତା ନଉକାରେ ବସି,
ମୁଗ୍ଧ ହେଲେ ତାର ରମ୍ୟ ରୂପେ ରସି ।

ବାନ୍ଧିଲେ ସଙ୍ଗମ ବିଧାନ ନନ୍ଦନ,
ଅନ୍ଧକାର ଯାଇଁ ସୃଜଲେ କୁନ୍ଦନ ।
ଅଦ୍ୟାପି ଏଠାରେ ଗାଢ଼ କୁଣ୍ଟୁଟିକା,
ଶୀତେ ପ୍ରାତେ ନଈ ଉଦ୍ଦେ ନିଘଣ୍ଟିକା ।
ଯେ ପୁଣ୍ୟ ଭୂମିରେ ପବିତ୍ର ବ୍ରାହ୍ମଣୀ,
ବ୍ରାହ୍ମଣୀ ହୋଇଛୁ ପଥର ରମଣୀ ।
ପବିତ୍ର ସଲିଳା ସରିତ ବ୍ରାହ୍ମଣୀ,
ମୁନି ସେ ସ୍ଥଳକୁ ବ୍ରହ୍ମମୟ ମଣି ।
ଦାସକନ୍ୟା ବୋଲି ନ କରି ବିଚାର,
ବ୍ରହ୍ମଜ୍ଞାନେ କଲେ ପୀରିତି ସଞ୍ଚାର ।
ବ୍ରହ୍ମଯଜ୍ଞେ କଲେ ବ୍ରହ୍ମରେତ ନ୍ୟାସ,
ଜାତ ହେଲେ ତହିଁ ବ୍ରହ୍ମବିଦ ବ୍ୟାସ ।
ଯହିଁ ନବଜାତ ଶିଶୁ ବ୍ୟାସ-ମୁଖ,
ଭାରତ ଭାରତୀ ଉପେକ୍ଷିଲା ଦୁଃଖ ।
ଭକ୍ତ ପାଇଁ ଭକ୍ତ ପୀରତି ପ୍ରବଣା,
ସଜାଇଲା ନବ ନବତାରେ ବୀଣା ।
କୀର୍ତ୍ତିଦେବୀ କୀର୍ତ୍ତି ମନ୍ଦିର ସାଜିଲେ,
ଯଶସ୍ୱିଙ୍କ ପଥ ଯହିଁ ବିରାଜିଲେ ।
ପରଂବ୍ରହ୍ମ ହୋଇ ପରମ ପ୍ରସନ୍ନ,
ହୃଦପଦ୍ମେ ତାଙ୍କ ସ୍ଥାପିଲେ ଆସନ ।
ବିଦ୍ୟାଧର କଣ୍ଠ-ମୁକ୍ତ ପୁଷ୍ପଚୟ,
ଆମୋଦିତ କଲା ସୁରଭିକା ଆଳୟ ।

କେତକ ପୁଷ୍ପ ପତ୍ର ବ୍ରାହ୍ମଣୀ ସଜାଇଲେ,
ବଟ ପୁଷ୍ପେ ବସି ଚଳଲେ ସଲୀଳେ ।
କଳସ୍ୱ ଏ ସୁର-କର୍ଣ୍ଣ-ରସାୟନ,
କଲେ ମଧୁମୟ ମଙ୍ଗଳ ଗାୟନ ।
ଜଳଦ ଆକାର ଧରୁ ଭକ୍ତି ରସ,
ଷଣ୍ଢ୍ୟ ଦାନକଲା ଘୋଷ୍ଟ ବଦ୍ଧାୟୁସ ।
ଭବିଷ୍ୟତ ଦେବ ପଣ୍ଡିତ ଆକାରେ,
ଗଦାକଲେ ଗ୍ରନ୍ଥ ଭାରତ ଆଗାରେ ।
ଭାରତୀ ଭୂଷଣ ଉପାଦାନ ରାଶି,
ଆଇଲେ କୋଇଲି ସ୍ରୋତେ ଭାସିଭାସି ।
ପବିତ୍ର ସରିତ ଆଦ ତୀର୍ଥଗଣେ,
ଅନାଇଲେ ବ୍ୟାସେ ସତୃଷ୍ଣ ନୟନେ ।
ଘେନ ଯିବା ପାଇଁ ତାଙ୍କୁ କୋଳ କର,
ପରସ୍ପରେ ହେଲେ ଓଟରା ଓଟର ।
ପରାଶର ଏଡ଼ ତାହାଙ୍କ ଜଞ୍ଜାଳ,
ପୁତ୍ରେ ରଖି ନେଲେ ନଜେ ଅନ୍ତ କାଳ ।
କାହିଁ ଜନ୍ମି ବ୍ୟାସ କେଉଁଠି ବଢ଼ିଲ,
କେତେ କେତେ ବେଦ ପୁରାଣ ଗଢ଼ିଲ ?
ଜନମ କାସାର ପଙ୍କଜ ଯେସନ,
ତେଜ କରେ ଦେବ ମସ୍ତକେ ଆସନ ।
ଏ କ୍ଷୁଦ୍ର ଶଇଳ ଶୃଙ୍ଗେ ହୋଇ ଜାତ,
ହିମାଦ୍ରି ମସ୍ତକେ ଶୋଭ ହେଲ ଖ୍ୟାତ ।

ହେର ସୀମନ୍ତିନୀ ହୋଇଥାଏ ହୀର,
ହୀର ଦେଇ ପୁଣି କିଣିଆଣେ ଜୀର ।
ସେ ହୀର ଶୋଭଇ ରାଜେନ୍ଦ୍ର ମୁକୁଟେ,
ତୁମ୍ଭେ ହେଲ ତଥା ଗିରିରାଜ କୂଟେ ।
ବାପର ସିନ୍ଧୁ-ଲହରୀ-ପଟଳ,
ଚୁମ୍ବନ୍ତି ସଦା ଯାର ପାଦତଳ ।
ଘନ ରୂପେ ପୁଣି ଉଠି ବାୟୁବଶେ,
ସ୍ୱର୍ଗ ରଞ୍ଜନ କରନ୍ତି ଉରସେ ।
ମନ୍ଦାକିନୀ ମୁକ୍ତା ପ୍ରଭାଜୟୀ ନୀର,
ନିତ ଅଭିଷିକ୍ତ କରେ ଯାର ଶିର ।
ହର ବଦାରତ କରିରାଜ ମୋଢ—
ପଟଳ ଯାଦେବନ୍ଦ ବିକାଶନ୍ତି ଜ୍ୟୋଢ ।
ସେହି ଗିରିରାଜ ହିମାଚଳ ଶ୍ରେଣୀ,
ହୋଇଥିଲେ ତୁମ୍ଭ କ୍ରୀଡ଼ାର ନିଃଶ୍ରେଣୀ ।
ସପ୍ତସାଗର ଯଥା ଚତୁର୍ଦ୍ଦଶ ପୁର,
ନୋହିଥିଲେ ତୁମ୍ଭ ନୟନକୁ ଦୂର ।
ଦିଶୁଥିଲା ତୁମ୍ଭ ସମସ୍ତ ଗୋଲକ,
ଅବନୀ ମଣ୍ଡଳ ହସ୍ତଆମଳକ ।
ଅଙ୍କାବନ୍ଧ ଥାଇ ଅଷ୍ଟାଦଶ ସିଦ୍ଧି,
ପାଦତଳେ ଥୋଉଥିଲେ ସର୍ବନିଧି ।
ପାଇଥିଲ ଯେଣୁ ସାଯୁଜ୍ୟ ଶର୍ବ୍ବର,
ମଣୁଥିଲ ଅନ୍ୟ ସବୁକୁ କର୍ବ୍ବର ।

ମହାଭାରତର ସଂଗ୍ରାମ କୌଶଳ,
ଭ୍ରାତୃ ବିବାଦର ବିଷମୟ ଫଳ
ପଶା ଖେଳେ ଯେଉଁ ଦଶା ହୁଏ ଲାଭ,
ଭୂମଣ୍ଡିର ଥାଏ ଯେମନ୍ତ ସ୍ୱଭାବ ।
ଧର୍ମପଥେ କେତେ ଭୀଷଣ ଆପଦ,
ହେଲେହେଁ ଧାର୍ମିକ ନ ଘୁଞ୍ଚାଏ ପଦ ।
ଅଧରମ ପଥ ପାଶେ ରତ୍ନସ୍ତୂପ,
ତାପଛେ ବିରଳ ଭୟଙ୍କର କୂପ ।
ବିରୂପେ ଗର୍ବିର ଗର୍ବ ହୁଏ ଖର୍ବ,
ଗୋଷ୍ଠ ଗୋଷ୍ଠ କରି ଦେଖାଇଲ ସର୍ବ ।
ଶ୍ରୀକୃଷ୍ଣଙ୍କୁ କରି ବିଷ୍ଣୁ ଅବତାର,
ଦେଖାଇଲ ତାଙ୍କ ମହିମା ଅପାର ।
ଯେ ଯେ ନ କରନ୍ତି ଜାତିର ବିଚାର,
ହେଲ ତାହା କେତେ ପ୍ରକାରେ ପ୍ରଚାର ।
ସରଳା ନିର୍ମଳା ଭାଗବତୀ ଗୀତ,
ତହିଁ ଦେଖାଇଲ ଭଗବତ ପ୍ରୀତି ।
ଶୂଦ୍ର ହୋଇ ସୂତ ଥିବାରୁ ବିଦ୍ୱାନ,
ଦେଖାଇଲ ମୁନି ସମାଜେ ସମ୍ମାନ ।
ଗରବେ ମହତେ କଲେ ପରିହାସ,
ତ ମହାମହିମ ବଂଶର ବିନାଶ ।
ବାହା! ଦେଖାଇଲ ହୋଇ ଅକୁଣ୍ଠିତ,
ଧନ୍ୟ ଧନ୍ୟ ମୁନିପୁଙ୍ଗବ ପଣ୍ଡିତ ।

ତନୁ ଯେ ଭୂମିର ଜନମ ଅଗାର,
ନ ପଡ଼ିଲା ତାର ନାମେ ଏକ ଗାର ।
ସଫଳ କଲଜ ବୋଲେ ଯା ସଂସାର,
ପ୍ରତାପର ତଳଦେଶେ ଅନ୍ଧକାର ।
ଯାଣେ ବାଷ୍ପରଥ କରୁଛି ଗମନ,
କର ବ୍ରାହ୍ମଣୀର ବକ୍ଷ ବିକମ୍ପନ ।
ଲକ୍ଷ ଲକ୍ଷ ଯାତ୍ରୀ ଯାଉଛନ୍ତି ଚଳି,
ଲକ୍ଷ ନ କରନ୍ତି ଭୂମି ଜନ୍ମସ୍ଥଳୀ ।
ଏଇ ଯେ ଶଙ୍ଖ ଗଙ୍ଗା ତ୍ରିଦଶ ବନ୍ଦିତା,
କୋଇଲ ଯମୁନା କଳିନ୍ଦ ନନ୍ଦନା ।
ସରସ୍ୱତୀ ମିଶି ପବିତ୍ର ତ୍ରିବେଣୀ,
ଏଭାବକୁ କେହି ନ ପାରନ୍ତି ଘେନ ।
ଶଙ୍ଖ ଗଙ୍ଗା ଘେନ ଶୋଭେ ଯେଣୁ ଉର,
ଏହି ରାଜ୍ୟ ନାମ ପଡ଼ି ଗାଙ୍ଗପୁର ।
ଶ୍ରୀମୁଖୁ ନିଃସୃତ ହେଲା ନାହିଁ ବାହା,
ଏ ପବିତ୍ର ତୀର୍ଥ ଲୁଚିଗଲା ଅହା ।
ହୁଏ ହେବ ବୋଲି ମହତ ଲକ୍ଷଣ,
ନିଜ ମାହାତ୍ମ୍ୟ କି ନ କଲ ବର୍ଣ୍ଣନ ।
ଜାଣିଛନ୍ତି ତନୁ ଅଦମ ନିବାସୀ,
ପୂର୍ବ ପୁରୁଷଙ୍କ ଅସ୍ଥି ଧରି ଆସି ।
ଏ ତ୍ରିବେଣୀ ଧାରେ ଦଅନ୍ତି ମଞ୍ଜାଇ,
ବସନ୍ତି ସେମାନେ ଉଚ୍ଚସ୍ୱର୍ଗେ ଯାଇ ।

ଏହି ଯେ ସୁରମ୍ୟ ଶୁଭ୍ର ବାଲି କୁଦ,
ବାଲ୍ୟେ ଖେଳ ଯହିଁ ଲଭୁଥିଲି ମୁଦ ।
ଏହିଯେ କର୍କଚ ତଚ ତରୁଗଣ,
ପୁଳିନକୁ କରୁଛନ୍ତି ଆଲିଙ୍ଗନ ।
ନ ଥିଲେ କି ଧରି ପୁଣ୍ଡ୍ର ସେ କାଳରେ,
ଚୋରୁଁ ନ ଥିଲି କି ଉଠି ସକାଳରେ ?
ପଢ଼ିଲେ ନବୀନ ଗ୍ରନ୍ଥର ଚରଣ,
କରୁ ନ ଥିଲି କି ଏଥି ବିଚରଣ ?
ଏଯେ ସ୍ରୋତ ଲାଗି ରହିଛି ପାଷାଣ,
କରୁ ନ ଥିଲି କି ଏଥିଁ ବସି ସ୍ନାନ ?
ଏହି କୋକିଳାଦି ବିହଙ୍ଗମ ମାନେ,
ତୋଷୁ ନ ଥିଲେ କି ମନ ମଧୁଗାନେ ?
ଖେଳୁ ନ ଥିଲେ କି ଡେଇଁ ଡାଳେ ଡାଳେ,
ଥରେ ଥରେ ରହି ପତ୍ର ଅନ୍ତରାଳେ ?
ଆପୁ ନ ଥିଲେ କି ଏଠାକୁ ଭ୍ରମରେ,
ଏ କେଳିକଦମ୍ବ ପୁଷ୍ପକୁ ଭ୍ରମରେ ?
ସେହି ଯେ ସେ କୁଳ ପାଦପ ପଟଳ,
ସମୁଦ୍ରଙ୍କେ ରହି ଅଛନ୍ତି ଅଟଳ ।
ବନାନ୍ତ ଦ୍ୟୁମଣି କନକ କିରଣ—
କାନ୍ତି କରୁଛନ୍ତି ଅଙ୍ଗ ଆଭରଣ ।
ଭଣ୍ଟ ଭୂମି ଦିଶୁଅଛି ହେମ-ମୟ,
କଷ୍ଟେଁ ଧରିଥିବ ତୁମ୍ଭର ହୃଦୟ ।

ସେଠେ ବଙ୍କ ଯୁଗ ବୁଲି ଅନ୍ଧକାରେ,
ମଣ୍ଡିବ ଶୈଳେନ୍ଦ୍ର ପାଦମୂଳ ଧରେ ।
ସେଯେ ଚକ୍ରବାକ ଦମ୍ପତି ଅଛିଲେ,
ସ୍ରୋତ ପାଶେ ଗାଢ଼ ପ୍ରେମେ ବିଳସିଲେ
ଏଦୃଶ୍ୟ ବା ପଡ଼ି ନଥିବ ଲୋଚନେ,
ଜଗତ ଥିବାରୁ ଶାସ୍ତ୍ର ଆଲୋଚନେ ।
ବସନ୍ତ ସୁଧାଂଶୁ ଶୀତଳ କିରଣ,
ବୀଣ ଅଳିଗଣେ ସ୍ନିଗ୍ଧ ସମୀରଣ ।
ବନଫୁଲ ମନମୋହନ ସୁଗନ୍ଧ,
ଅପୁ ନଥିଲେ କି ଦେବ ଦରୁରନ୍ତୁ ।
ରମ୍ୟ ବଦରିକା-ଶ୍ରମେ ବୁଲି ବୁଲି,
ବାଲ୍ୟକଥା କେବେ ନଥିବତ ଭୁଲି ।
ଏସକଳ ବର୍ତ୍ତିଥିବ ସ୍ଥାନନ୍ତରେ,
ଅନ୍ତର୍ଗତ ଭାବ ଯୋଡ଼ାଇ ଅନ୍ତରେ ।
ମତ୍ସ୍ୟଗନ୍ଧା ରୂପେ ଭୁଲିଥିଲା ମନ,
କରିବାକୁ ସେହୁ ଲଜ୍ଜା ପ୍ରଶମନ,
ତୁମ୍ଭ ଅବିର୍ଭାବ କାଳରୁ ଚଞ୍ଚଳ,
ପିତା ଯଦ ତଳ ଥିବେ ଉଜ୍ଜ୍ୱଳ ।
ତୁମ୍ଭେ ତହୁଁ ଯଡ଼ ଥିଲେ ଏ ପ୍ରଦେଶ,
ଅଜ୍ଞେୟ ତୁମ୍ଭର ନୂତନେ ସେ ସନ୍ଦେଶ ।
କଣ୍ଠେ ଲେଖିଅଛ କତଣସି ଠାରେ,
ନ ଖୋଜିଲୁ ପଢ଼ ଜଳଦା ଅଠାରେ ।

ଶାସ୍ତ୍ର ଖୋଜିବାକୁ ଅବସର କାହିଁ,
ସେଥି ପାଇଁ ବୋଲୁଅଛୁଁ ଗାହି ଗାହି ।
ଅପ୍ରକାଶ ନୁହେ ଏତୀର୍ଥ କେବଳ,
ଏହିରୂପେ ରହିଅଛି ବହୁ ସ୍ଥଳ ।
ଚଟେଶ୍ୱାପଲ୍ଲୀ ପୃଷ୍ଠଜୀର ପୃଷ୍ଠୋପଲ,
ଯହିଁ ଶୋଭେ ରାମ ଶ୍ରୀପଦ-କମଳ ।
ପାପକ୍ଷୟ-କର ପାପ-କ୍ଷୟ-ଘାଟ,
ମୁକ୍ତ-ପାପ ଯହିଁ ଉତ୍କଳ-ସମ୍ରାଟ ।
ପାପ ଅପସରି ଯେଠାରେ ରହିଲା,
ସାକ୍ଷ ଦେବାପାଇଁ ରହିଛି "ରହିଲା" । *
ତରଦା ଶଙ୍କର ରହି ନିଦର୍ଶନ,
କରୁଛନ୍ତି ସେହିସ୍ଥାନ ପ୍ରଦର୍ଶନ ।
ପରଶୁରାମଙ୍କ ପ୍ରିୟ ବାସସ୍ଥଳ,
ସିଦ୍ଧ ନିସେବିତ ମହେନ୍ଦ୍ର ଅଚଳ ।
ଉପ୍ତବୀଜ ରୂପେ ଛନ୍ତିଏ ସକଳ,
ଲଭିନାହିଁ କବମାନ ବୃଦ୍ଧିକଳ ।
କିବା ନୀଳାଚଳ ନିକଟ ବର୍ତ୍ତିତ୍ୱ,
କରୁଅଛି ତାଙ୍କୁ ତହିଁରୁ ବଞ୍ଚିତ ।
ଚନ୍ଦ୍ରପାଶେ ଯଥା ତାରକା ମଣ୍ଡଳ,
ନ ପାରନ୍ତି କରି ପ୍ରଭା ପ୍ରବଳ ।
କହୁଛି "ସକଳ ତୀର୍ଥ ସେବନ କରି,

* ମହାନଦୀ କୂଳସ୍ଥ ଏକ ଗ୍ରାମ ।

ଅଛନ୍ତି ଉତ୍କଳ ଦେଶେ ବଙ୍ଗୋଳର ।”
ତୁମ୍ଭେ ଚିର ଜୀବୀ ହରିପ୍ରିୟ ଦାସ,
ନିରବେ ରହୁଛ ଶ୍ରୀହରିଙ୍କ ପାଶ ।
ତୁମ୍ଭେ ଥାଉଁ ଥାଉଁ ଅମ୍ଭର ଏଦଶା,
ଲୋକେ ପାଉଅଛୁଁ କେତେଲୋକ ହସା ।
ଏତ ଉତ୍କଳର କପାଳର ଦୋଷ,
ଅଦ୍ୟାପି ରହୁଛୁ ବଧି ଅସନ୍ତୋଷ ।
ନହେଲେ ବା ଥାଉଁ ଥାଉଁ ସ୍ୱକ୍ଷମତା,
ଶ୍ରୀରାମଚନ୍ଦ୍ରଙ୍କ କୁହନ୍ତା ମମତା ?
ବାସୁଦେବ ଦେବ ଅବକାଭୂଷଣ,
ଅକାଳେ ଛାଡ଼ନ୍ତେ ସ୍ୱର୍ଗର ଆସନ ।
ସ୍ୱାଳୟେ ଜନ୍ମି ଶ୍ରୀ ଚନ୍ଦ୍ରଶେଖର,
ଅଲସ୍ୟ ହୁଅନ୍ତେ ଦାରିଦ୍ର ଦୁଃଖର ।
ରାଧାନାଥ ହୋଇ ଚିରକୁଣ୍ଣ କାୟ,
ନେଇଥାନ୍ତେ ଇହ ଧାମରୁ ବିଦାୟ ।
ଏବେ ଏବେ ରାଜା ବିଳାସିତା ପ୍ରିୟ,
ବ୍ରାହ୍ମଣେ ପାଠକ ଯାଚକ ନିର୍ଭିୟ ।
ସୌଭାଗ୍ୟ ଥିଲେକି ଏ ବିପାକ ଘଟେ,
ଭଲଲେଖା ନାହିଁ ଏହା ଭାଲପଟେ ।
ନା ନା ଏହା ମୋର ବୁଝିବା ଭରମ,
ଦେବୀ କହିଦେଲେ ସକଳ ମରମ ।
ସେହି ପରାଶର ସେହି ଶଉତମ,

ଜାଣନ୍ତି ଏସ୍ଥଳ ପବନ ଉତ୍ତମ ।
ନାଗ ଋଷି ଏଥି କରୁଛନ୍ତି ସ୍ନାନ,
କରୁଛନ୍ତି ବେଦବ୍ୟାସ ବେଦଗାନ ।
ରହୁଛନ୍ତି ସ୍ନେହବହ ସତ୍ୟବତୀ,
ବାସବ ମୋହିନୀ ଅହଲ୍ୟା ଯୁବତୀ ।
ଅହଲ୍ୟାଙ୍କ ପଦ ସ୍ପର୍ଶ ଲାଳସେ,
ଅଣ୍ଟୋଇଛନ୍ତି ଇନ୍ଦ୍ର ପ୍ରୀତି ବଶେ ।
ମୁନିମାନେ ନିଜ ନାମନ୍ତେ ଏସ୍ଥଳ,
ରଖିଛନ୍ତି ଶାସ୍ତ୍ରେ ନ କର ଚହଳ ।
ବଙ୍ଗାଳ ବଙ୍କୋଦ ବଙ୍କ ବଙ୍କପ୍ରିୟ,
ବଙ୍କଦେଖି ବାଣୀ ସୁଧା ଢାଳ ଦିଅ ।
ହେ ସଚ୍ଚିଦାନନ୍ଦ ତ୍ରିଭୁବନ ରାଜା,
ଶୁଭିଲାଣି ତୁମ୍ଭ ବାଣୀ-ବୀଣା ବାଜା ।
ତୁମ୍ଭ ଅନୁରୂପ ଅବରଜ ଗଣ,
ଭାରତ ଭାରତୀ ଭାବେ ବିଚକ୍ଷଣ ।
ଗଙ୍ଗାବଣ-ପଦ୍ମରାଗ-ମଣି ଗର୍ଭେ,
ଜନମିଛ ପଦ୍ମରାଗ-ମଣି ସର୍ବେ ।
ପ୍ରଧାନପାଟରେ ବସନ୍ତ ନିବାସ,
ନିର୍ମାଣିଛ ତାହା ଦେଖିଲେଣି ବ୍ୟାସ ।
ପ୍ରପାତ-ଶୀକର-ବାହୀ ସମୀରଣ,
କରୁଅଛୁ ତହିଁ ସଦା ବିଚରଣ ।
ଅଟବୀ ଅଚଳ ଘନଶ୍ୟାମ କାନ୍ତି,

ନେତ୍ରେ ଦେଉଛନ୍ତି ମଧୁମୟ ଶାନ୍ତି ।
ତୁମ୍ଭ ଅମଳଣେ ବ୍ୟାସେ ଲଭତୋଷ,
ବସିବେ ସେପୁରେ ଫେର କାବ୍ୟକୋଷ ।
କୃପାମୟ ଦେବ ପ୍ରଭଞ୍ଜ-ବିନୋଦ,
କବି ବୁଧ ଦେଖି ଲଭଥାଅ ମୋଦ ।
ଶ୍ରୀ କିଶୋରଚନ୍ଦ୍ର ଢାଲଚେର ପତି,
କୀର୍ତ୍ତିକ ମଣ୍ଡଳ ପ୍ରଧାନ ସମ୍ପତ୍ତି ।
ଆଶାଦେଉଅଛ ତୁମ୍ଭେମାନେ ମିଳ,
ଉତ୍କଳ ଦୁର୍ଦ୍ଦଶା ଦ୍ୱାର ଦେବ ଢଳ ।
ଉତ୍କଳ ଜନନୀ ଯୋଗ୍ୟତମ ସୁତ,
ଶ୍ରୀମଧୁସୂଦନ ସର୍ବଗୁଣ ଯୁତ ।
ଫିଟାଇବେ ପରା ସୌଭାଗ୍ୟର ପଥ,
ସେପର କାର୍ଯ୍ୟକୁ ସେ ଏକା ସମର୍ଥ ।

# ଚନ୍ଦ୍ର-ରଜନୀ ।

୧

ପୂର୍ଣ୍ଣିମା ପ୍ରଦୋଷେ ପୂର୍ଣ୍ଣ ଚନ୍ଦ୍ର ଆଗମନ,
ଶୁଣି ତରତରେ ସଜ ରଜନୀ ରମଣୀ,
ଲଲାଟେ ଦେଲେ ଶୁଭ୍ର ଉଜ୍ଜ୍ୱଳ ରତନ
କର୍ଣ୍ଣ ଯୁଗେ ଧ୍ରୁବାଗସ୍ତ୍ୟ ମନୋହର ମଣି ।
ରଙ୍ଗାଧରେ ମନ୍ଦହାସ କରୁ ପରକାଶ,
ଦେଖାଇଲା ସୁ-ବିମଳ ପ୍ରସନ୍ନ ବଦନ ;
ହୃଷ୍ଟ ପୁଷ୍ଟ କଳେବରେ ଉଜ୍ଜ୍ୱଳ ଆକାଶ,
ଚନ୍ଦ୍ରହିଁ କୋମଳକରେ ଦେଲେ ଆଲିଙ୍ଗନ ।
ମଧୁରେ ମଧୁର ମିଶି ହେଲା ମଧୁମୟ,
ଏ ଯୋଗ ମିଳଇ ହେଲେ ସୌଭାଗ୍ୟ ସମୟ ।

୨

କୁସୁମ କୋମଳ ଚନ୍ଦ୍ର ରଜନୀ ଧନର,
କାନ୍ତ କର ସ୍ପରଶରେ ହେଲା କଣ୍ଟକିତ ;
ପ୍ରେମେ ଉଛୁଳିଲା ହୃଦ ସାଗର ଗମ୍ଭୀର,
କଳୁଷ କପୋଳ ହେଲା କାନ୍ତ ବିଭୂଷିତ ।

କଶୋଣୀ କଶୋର, ଲଭି ସଙ୍ଗ ପରସ୍ପର,
କଲେ ନିଜ ନିଜ ପୂର୍ଣ୍ଣ ଶୋଭାର ବିକାଶ ;
ଶୋଭାରେ ମଣ୍ଡିତ ହେଲା ବିଶ୍ୱ ଚରାଚର,
ଜଳସ୍ଥଳ ସହିତରେ ଅବନୀ ଆକାଶ ।
ସେ ଶୋଭାର ଉପମାକୁ ବିଶ୍ୱେ ନାହିଁ ସ୍ଥାନ,
ମୁକୁତାକୁ ଗରଗଡ଼େ କେବଳରେ ସମାନ ।

୩

ସେ ଶୋଭାରେ ଉଛୁସିଲା ପାଷାଣ ହୃଦୟ,*
ଜଳାଶୟେ ଉଚ୍ଛୁସିଲା କୁମୁଦ କାନନ ;
ଧରାତଳେ ଉଚ୍ଛୁସିଲା ଔଷଧି ନିଚୟ,
ଗଗନେ ଉଚ୍ଛ୍ୱସିଲେ ଚକୋର ଗାୟନ ।
ଜନପଦେ ପୁରେପୁରେ ପ୍ରଦୀପ ଉଲ୍ଲାସ,
ଉଚ୍ଛ୍ୱସିତ ଦେବାଳୟ ଶଙ୍ଖ ଘଣ୍ଟ ସ୍ୱନେ ;
ହୃଦୟେ ହୃଦୟେ ମହା ଉଲ୍ଲାସ ବିକାଶ,
ଉଲ୍ଲାସେ ଖେଳନ୍ତି ଠାବେ ଠାବେ ଶିଶୁ ଗଣେ ।
ଉଲ୍ଲାସ ନେଇଛି କରି ବିଶ୍ୱ ଅଧିକାର,
ପ୍ରବଳର ଆଧିପତ୍ୟ ସର୍ବତଃ ସ୍ୱୀକାର ।

୪

ବାଟରେ ଗଉଡ଼ ବେଣୁ ବଜାଇ ବଜାଇ,
ଧାଇଁ ଧାଇଁ ହମ୍ବା ରବ କରି ବାରୁମାନେ ;

---

* ଚନ୍ଦ୍ର କିରଣରେ ଚନ୍ଦ୍ରକାନ୍ତ ମଣି ଦ୍ରବିବା ପୁର୍ବେଣ ପ୍ରସିଦ୍ଧ ।

ବାଛୁରୀ ଗୋଶାଳେ ଲାଞ୍ଜ ହଲାଇ ହଲାଇ,
ହୁଟୁକ୍କି ହୁଟୁକ୍କି ହୋଇ ରତ କ୍ଷୀର ପାନେ ।
ହାଟରୁ ହଟାର ଫେର ଗୀତ ଗାଇ ଗାଇ,
ଘାଟରୁ କେଉଟ ଆସି ପ୍ରଫୁଲ୍ଲ ବଦନେ ;
ନାଟ୍ୟଶାଳେ ନଟ ହସ୍ତ ଖେଳାଇ ଖେଳାଇ,
ନବରଙ୍ଗେ ନାଚି ଚାହିଁ ବଙ୍କିମ ନୟନେ,
ଆନନ୍ଦ ପ୍ରକଟ କଲେ ବିବିଧ ମକାରେ,
କୋଳାହଳ ପଡ଼ିଗଲା ଆନନ୍ଦ ବଜାରେ ।

୫

"ନିର୍ମଳ ଚନ୍ଦ୍ରମଣ୍ଡଳ ଶରଦେ ବିରାଜ,"
ଚନ୍ଦ୍ର ଚାହିଁ ମୁଦେ ଗାଏ କେ ରସିକ ବର ;
"ଦଶେ ଯଥା ଦର୍ପକ ଦର୍ପଣ ଥିଲେ ମାଜି,"
ଗାଏ ତହିଁ ପଛେ ତାର ପ୍ରିୟ ସହଚର ;
"ଚାହିଁ କୁମର କାତର" ବୋଲଇ ପ୍ରଥମ
ଦ୍ୱିତୀୟ ରସିକ କର ପୁଲକିତ ସ୍ୱର ;
ଉଚ୍ଚାରେ ଚତୁର୍ଥ ପାଦ ଗାଇ ମନୋରମ,
" ଲେଖି ଆରମ୍ଭିଲା ବସି ବିନୟ ପତର ।
ବୁଲନ୍ତ ଯୁବକ ଯୁଗ ସୁଧାଂଶୁ କିରଣେ,
ଭଞ୍ଜ କବି ବିରଚିତ ପଦ କରି ମନେ ।

୬

କୌମୁଦୀ କୋମଳ ବପୁ କୁମାରୀଙ୍କ ଦଳ,
ନାନା ରଙ୍ଗେ ଯୋଡ଼ା ଯୋଡ଼ା ଗୀତ ଗାଇଗାଇ ;

ଖେଳାଇ ଅଞ୍ଜନାଞ୍ଜିତ ନୟନ ଚଞ୍ଚଳ,
କେତେବା ଖେଳିଲେ ଖେଳ ବସି ଉଠି ଯାଇଁ ।
କର ଚରଣରେ ବାଜି ମଞ୍ଜୁ ଅଳଂକାର,
କରୁଥାନ୍ତି ସମୁହ୍ଲାଦଦାନର ବ୍ୟଞ୍ଜନା ;
ଅଯତନ ବବ ଖୋଷା ଫିଟି ଅବା କାର,
ପାଉଥିଲା କୁମାରୀର ମଧୁର ଗଞ୍ଜନା ।
ଉଲ୍ଲାସ ନଶାରେ ହେଲେ ପ୍ରବଳ ଲମ୍ଫଣୀ,
ଖେଳନ୍ତି ବାଳାଏ ତହିଁ ପହିଁର ପହିଁର ।

୭

ରାଜପୁରେ ରାଜସୁତା ସଖୀ ସଙ୍ଗେ ଖେଳେ,
ସାମନ୍ତ ଭବନେ ତଥା ସାମନ୍ତ ନନ୍ଦିନୀ ;
ପ୍ରଜା ପୁରେ ପ୍ରଜା ସୁତା ପ୍ରଜା ସୁତା ମେଳେ,
ଚନ୍ଦ୍ରମା କିରଣେ ହେଲା ଖେଳ ବିନୋଦନା ।
କୁମାରୀ କୋମଳ କଣ୍ଠ ମଧୁର ବଚନ,
ସୁଧାକର ସୁଧାକରେ ମିଶି ମନୋହର ;
ମୂଲ୍ୟତାର ନବୁଝନ୍ତି ଅଭାବୁକ ଜନ,
ଯେ ବୁଝଇ ତାକୁ ତାହା ଅତି ପ୍ରୀତି କର ।
ବୃନ୍ଦାବନେ ହେଉଥିଲା ମୁରଲୀ ନିସ୍ୱନ,
ଆନ କେ ବୁଝିଲା ତାହା ଛଡ଼ି ଗୋପୀଗଣ ।

୮

ରାଜା ରାଜକାର୍ଯ୍ୟ ସାର କକ୍ଷ ସଲଖାଇ,
ବିଚରଣ କଲେ ଥରେ ଶୁହିଁ ଚନ୍ଦ୍ର କର ;

ପାଠକ ଫିଙ୍ଗାଇ ପୋଥି ଡାକ ସଦ୍ଧ୍ୟାୟୀ,
ବୋଲେ ଦେଖ ଭାଇ ପଢ଼ା ଯାଉଛୁ ଅକ୍ଷର ।
କ୍ଷେତ୍ରରୁ କୃଷକ ଆସି ପୁତ୍ର କୋଳ କରି,
ଚନ୍ଦ୍ର କରେ ବୂଲ କରେ ବଦନ ଚୁମ୍ବନ ;
ଜନନୀ ରୋରୁଦ୍ୟମାନ ପୁତ୍ର କାଖେ ଧରି,
ଜହ୍ନମାମୁ ଡାକେ କରି ପ୍ରିୟ ସମ୍ଭାଷଣ ।
ଶିଶୁହିଁ ଚନ୍ଦ୍ରମା ଚାହିଁ ଲଭଇ ଆମୋଦ,
ଦବ୍ୟରୁପେ ନ ହୁଅଇ କାହାର ବିନୋଦ ।

୯

ପଥିକ ଚାଲଇ ପଥ ଶ୍ରାନ୍ତ ତେଜି ମନୁ,
ବରଞ୍ଚ ଆନନ୍ଦେତାର ହୃଦୟପ୍ଲାବିତ ,
କୌମୁଦୀ ସ୍ରୋତରେ ଯେହ୍ନେ ଭାସୁଅଛୁ ତନୁ,
ମନେ ମନେ ଗାଉଥାଏ ମନୋମତ ଗୀତ ।
ଦୂରେ ଯାଉଥାଏ କାହା ଅସ୍ଫୁଟ ଗାୟନ,
ଲୀଳବଶେ ଧୂନେ ପୁଣି ସୁକଣ୍ଠର ବିନା ;
କାହାର ସମୁଚ୍ଚସ୍ୱର ଭେଦଇ ଗଗନ,
ତହିଁସଙ୍ଗେ ବାଜୁଥାଏ ଦଗଙ୍ଗନା ବୀଣା ।
କାହିଁ ଗୋରୁ ଚାଲୁଥାଏ ମୁଦେ ଟାଣି ଗାଡ଼ୀ,
ଚାଳକ ଗାଉଛୁ ଗୀତ ସ୍ଥିର କରି ବାଡ଼ୀ ।

୧୦

ଯାତ୍ରି ଦଳ ଚାଲୁଥାନ୍ତି ଆନନ୍ଦରେ ଭାସି,
ଉଚ୍ଚେ କେହୁ ବୋଲେ "ଜୟ ଜଗନ୍ନାଥ ଜୟ" ;

ତହୁଁ ସଙ୍ଗେ ଆଉମାନେ ସେହପରଭାଷି,
କରୁଥାନ୍ତି ଜଗନ୍ନାଥ ପାଦେ ମନ ଲୟ ।
ବିଲରେ କୃଷକ ଆଉ ସେ ଶବଦ ଶୁଣି,
ବୋଲଦଏ ଥରେ "ଜୟଜଗନ୍ନାଥ ଜୟ" ;
ଦ୍ୱିଗୁଣ ଉଚ୍ଚରେ ସେହ ଯାତ୍ରିଦଳ ପୁଣି,
ଆନନ୍ଦେ ବୋଲନ୍ତି "ଜୟ ଜଗନ୍ନାଥ ଜୟ"।
ଜଗନ୍ନାଥ ଜୟସ୍ୱର ପୁଣି ଶୁଭେ ଦଶେ,
ତରୁଲତା ଜଗନ୍ନାଥ ରଟୁଥାନ୍ତି କଷେ ।

୧୧

ପକ୍ଷୀ ଟିଏ ଶୋଇଥାଏ ଉର୍ଦ୍ଧ୍ୱେ ଟେକ ପଦ,
ସ୍ୱରଗ ପଡ଼ିଲେ ମାଡ଼ି ତନୁରକ୍ଷା ପାଇଁ ;
ଦେଖକେଡ଼େ ସାବଧାନ ଜଗିଛି ଆପଦ,
ସ୍ୱରଗ ପଡ଼ିଲେ ସୁଦ୍ଧା ଭୟତାର ନାହିଁ ।
"କେକେରେ, କେକେରେ" ରାବି ଟେଣ୍ଡୋଇ ଗଗନେ
ବୁଲୁଥାଏ ପଥିକର ପରତେ କଣ୍ଣାସି ;
ପଥିକ ଉତ୍ତର ଦେଇ ବିହଙ୍ଗ ପ୍ରଶ୍ନନେ,
ଚାଲଯାଏ "ଶ୍ରୀରାମଙ୍କ ଲୋକ" ବୋଲି ଭାଷି ।
ବିହଙ୍ଗହିଁ ଚାଲଯାଏ ତହୁଁ ଦିଗନ୍ତର,
ରାମନାମ ଦୃଢ ହୁଏ ହୃଦୟେ ପାନ୍ଥର ।

୧୨

କୃଷ୍ଣପାରଗଣ ବଧୂ ଶାବକ ସହିତ,
ଶସ୍ୟ କ୍ଷେତ୍ର ଲକ୍ଷକରି କରନ୍ତି ଗମନ ;

ଗନ୍ଧପଥେ କର କବି ବଚନ ଫଳିତ,
ଚୌଦିଗେ ଫେରାନ୍ତି ଗୃରୁ ଚଞ୍ଚଳ ଲୋଚନ ।
ଥରେ ଥରେ ଅଚମ୍ଭିତେ ହୋଇ ଚମତ୍କୃତ,
ଡିଁଅନ୍ତି ବିଚିତ୍ର କରି ଗଗନ ମଣ୍ଡଳ ;
ଅଶ୍ୱାରୂଢ଼ ମୃଗଧର ପୂର୍ବ ପରିଚିତ,
ଲୋଡ଼ନ୍ତି ସହସା ଭୟେ ତଦାଶ୍ୟୁଷରଣ ।
ସବୁଠାରେ ଦେଖାଯାଏ କ୍ଷୁଦ୍ରର ଏଦଶା ,
ପାଉବା ନପାଉ ଫଳ ମହତେ ଭରସା ।

୧୭

ଅଦ୍ୱିଜ ବାଦୁଡ଼ି ଗଣ ଶମ୍ବୁକର ପରି, *
ତରୁଡ଼ାଳେ ଝୁଲୁଥିଲେ ହୋଇ ନମ୍ର ମୁଖ ;
ରଜନୀ ଆଗମ ଦେଖି ଦ୍ୱିଜଭାବ ଧରି,
ଚୌଦିଗେ ଭ୍ରମଣ କଲେ ହୃଦେ ଭରି ସୁଖ ।
ପେଚକ ବ୍ରାହ୍ମଣ ପରି କରି ଉଦ୍ଗୀରଣ,
କଲେ ନବ ନବ ଫଳ ପଲ୍ଲବ ଆହାର ;
ଗ୍ରାମେ ଗ୍ରାମେ ଘରେ ଘରେ ଲଭିଲେ ଭୋଜନ,
କଞ୍ଚା ହେଉ-ପକା ହେଉ ଖାଆନ୍ତି ଯାହାର ।
ଅଦ୍ୱିଜର ହୋଇପାରେ ଦ୍ୱିଜ ପରାକ୍ରମ,
ଜଗତରେ ବୁଧ୍ୟ ନୁହେ ପ୍ରକୃତିର ଧର୍ମ ।

---

* ରାମରାଜ୍ୟରେ ଶମ୍ବୁକ ନାମ ଶୂଦ୍ର ତପସ୍ୟା କରୁଥିବା କଥା ରାମାୟଣରେ ଦ୍ରଷ୍ଟବ୍ୟ ।

୧୪

ପ୍ରଥୂଳ ବିଗ୍ରହ ବପୁ ମୃଦୁ ମନୋହର,
ବାଲ୍ୟରେ ଉଠିଲା ତାଙ୍କ ଉର୍ଦ୍ଧ୍ୱକୁ ଆସନ ;
କର ଦେଇ ଦେଇ ହେଲେ କୃଶୁଁ କୃଶତର,
ବଳୁ ବେଳୁଁ ବେଳ ହେଲା କାନ୍ତି ବରଧନ ।
ଉଚ୍ଚକୁ ଉଠିଲେ ସାଧୁ ହୁଅନ୍ତି ଭାସ୍ୱର,
ସ୍ୱଭାବତଃ ସୂକ୍ଷ୍ମ ତର ହୁଏ ତାର ମନ ;
ଲୋକହିତ ପାଇଁ ଦାନେ ନହୁଏ କାତର,
ସେହିଗୁଣେ ଗଣ୍ୟମାନ ଚନ୍ଦ୍ର ମହାଜନ ।
ଚନ୍ଦ୍ରର ସହିତ ଏକା ଚନ୍ଦ୍ରର ତୁଳନ,
ଗଗନର ତୁଲ୍ୟ ଯଥା ଅଟଇ ଗଗନ ।

୧୫

ଏହିଚନ୍ଦ୍ର ଥାଇ ଦିନେ ପ୍ରଭାକର ଘରେ,
ନିଜର ପ୍ରଭାବ ସବୁ କରିଥିଲେ ନାଶ ;
ମୃତ ଜ୍ଞାନକରି ତାଙ୍କୁ କେତେକ ବା ନରେ,
ଦୁଃଖ ପ୍ରଦର୍ଶନ କଲେ କରି ଉପବାସ * ।
ହେଲେ ଦିନ୍‌ଦିନ ତହୁଁ ଯେତେକ ଅନ୍ତର,
ତେତେକ ପ୍ରଭାବ ହୋଇ ଆସିଲା ବିକାଶ ;
ପୂର୍ଣ୍ଣ ଦିନେ ଆଇ ଆଜ ପୂର୍ଣ୍ଣ କଳାକର,
ପ୍ରଭାବଲେ କରୁଛନ୍ତି ତମିର ବିନାଶ ।

* ଅମାବାସ୍ୟା ଦିନ ଜନ୍ମ ଚନ୍ଦ୍ରୋପବାସ କରନ୍ତି, ଅମାବାସ୍ୟା ଦିନ ଚନ୍ଦ୍ର ସୂର୍ଯ୍ୟ ଏକ ରାଶିରେ ଥାନ୍ତି ।

ଯେତେଡ଼େଲୋକ ହେଉ କଲେ ପରଗୃହେ ବାସ,
ନିଜଗୁଣ ଯଶ ସବୁ ହୋଇଥାଏ ହ୍ରାସ ।

୧୬

ଏହୁଚନ୍ଦ୍ର ଥିଲେ ହେଲେ କ୍ଷୀଣ ତନୁ ଯାର,
ଉଜ୍ଜ୍ୱଳ ରଜନୀ ମୁଖ କ୍ଷଣେକ ମାତର ;
ଚାଲିଗଲେ ସେ ବିରହ ଦୁଃଖେ ହୋଇବଶୀ,
କାନ୍ଦୁଥିଲା ବିଷାଦରେ ମଣ୍ଡି ଅବସର ।
କୁମୁଦିନୀ ସହିତରେ ତାରାଗଣ ମିଶି,
କରନେଲେ ରଜନୀର ଦୁଃଖାପନୋଦନ
ସପତ୍ନୀ ବିଗ୍ରହ ଚିନ୍ତା ମାନସେ ନ ହେଁପି,
ଦେଖାଇଲେ ନିଜ ନିଜ ସହୃଦୟା ପଣ ।
ପରିବାର ମଧ୍ୟେ ଜଣେ ପଡ଼ିଲେ ଆପଦେ,
ସମ୍ଭାଳି ନ ଅନ୍ତି ଆମ୍ଭମାନେ ପଦେ ପଦେ ।

୧୭

ପର ଅଗ୍ରେ ତାରାଗଣ ନ ଦେଖାଇ ମୁଖ,
ଭାରତ ଲଳନା ପ୍ରାୟେ ଲୁଚିଥାନ୍ତି ଘରେ,
ବିରୂପ ରମଣୀ ଭାବେ ମଣିମନ୍ଦା ସୁଖ,
ରଜନୀ ଭ୍ରମଇ ସ୍ୱାମି କର ଛନ୍ଦି କରେ ।
ତାରାଗଣ ସବୁଦିନେ ଥାନ୍ତି ଘରେ ଘରେ,
ସ୍ୱାମୀ ସଙ୍ଗେ ବୁଲିବାକୁ ନାହିଁ ଅଧିକାର ;
“ଅଗମ୍ୟ” କହୁଛି ଲେଖା ନାରୀର ଶାସ୍ତ୍ରରେ,
ବିଦେଶ ବା ନଦ ନଈ ନଗର ବଜାର ।

ମଣୁଥାନ୍ତି ଆପଣାକୁ ଉଚ୍ଚ ତାରାଗଣ,
ରଜନୀ ରାଜ୍ୟରେ ସିନା ଉଜ୍ଜ୍ୱଳ ବଦନ ।

୧୮

ରଜନୀର ଯୋଗେ ଚନ୍ଦ୍ର ଏତେ ପ୍ରୀତିକର,
ରଜନୀ ହସ୍ତରେ ତାଙ୍କ ବିଭବ ସକଳ,
ରଜନୀ ଦୁଆରେ ଆସି ହୋଇନ୍ତି ଭାସ୍ୱର,
ଖଞ୍ଜିଥାନ୍ତି ଗଗନର ଜ୍ୟୋତିଷ୍କ ମଣ୍ଡଳ ।
ରଜନୀ ଯୋଗିନୀ ଅତି ଶବଢ଼ ଚାଳନୀ,
ଦୃଷ୍ଟିଶକ୍ତି ପ୍ରଦାୟିନୀ ଦିବସଅନ୍ଧର,
ସ୍ନେହମୟୀ ଅଦୃଷ୍ଟର ଦୁଃଖ ବଧାୟିନୀ,
ତା ପ୍ରସାଦେ ଖଦ୍ୟୋତହିଁ ହୁଏ ଜ୍ୟୋତିଶ୍ୱର ।
ଅଭୟ ଦାୟିନୀ ନିଶା ସର୍ବ ଜୀବର,
ଅଜସ୍ରର ଜନ୍ମ ପାଇଁ ମନ୍ତ୍ରଣାର ଘର ।

୧୯

ସପ୍ତର୍ଷି ରଜନୀର ମଧୁର ମୂରତି,
ଦରଶନ ପାଇଁ ଚାହିଁ ବସିଥାନ୍ତି ପଥ ;
ପାଦରେ କରନ୍ତି ଅର୍ଘ୍ୟ ମଙ୍ଗଳ ଆରତି,
ଉଦତୀ ହସ୍ତରେ ସାଜି ପ୍ରଦୀପ ସପତ ।
ଲାଜରେ ଲୁଚାଇ ମୁଖ ଚାହିଁ ଅରୁନ୍ଧତୀ,
ମନ୍ଦ ମନ୍ଦ ହସି କରୁଥାନ୍ତି ଉପହାସ ;
ରଜନୀକି ବୋଲୁଥାନ୍ତି ଧନ୍ୟରେ ଯୁବତୀ,
ସ୍ୱର୍ଗୀୟ ମୁନୀନ୍ଦ୍ରଗଣ ହେଲେ ତୋର ଦାସ

ଭୂବାଳ ରୂପିଣୀ କାଳୀ ମୋହନ୍ତି ଜଗତ,
ମାନବ ଦାନବ ଦେବ ସର୍ବେ ତୋ ଭକତ ।

୨୦

* ସୁକୁମାର ବୁଧ ଦ୍ୱିଜରାଜଙ୍କ କୁମର,
ନାଚ ଖେଳ ମଣ୍ଡେ ଆସି ରଜନୀ ପ୍ରାଙ୍ଗଣେ ;
କୁମର ମଣିର ସ୍ୱଚ୍ଛ ଗୃହେଁ ତରତର,
କୋଳୁଁ କୋଳେ ଯେନ ନେଇଯାନ୍ତି ତାରାଗଣ ।
ରୁଷି ବୁଧ ପୁଣି ଆସେ ରଜନୀର କୋଳେ,
ରଜନୀ ଅଉଂସି ଶିଶୁ ସୁନ୍ଦର ବଦନ ;
ହୋଇ ସ୍ନେହ ଜରଜର ଭକ୍ତି ପ୍ରେମଭୋଳେ,
ହାସ ସୁଶୋଭିତ ଗଣ୍ଡେ ଦଅଇ ଚୁମ୍ବନ ।
ମାତାର ନ ମାନେ ଶିଶୁ କଠିନ ବାରଣ,
ଯାର ସ୍ନେହ ତାର କୋଳେ କରେ ବିଚରଣ ।

୨୧

କବ ଅବିରତ ଏହି ରଜନୀ ସଙ୍ଗତ,
ସେବ ଲଭ ଦେବପଦ ବାଞ୍ଛିତ ପ୍ରସାଦ,
† ଅମିଶ୍ର ଭାବତ ଛବି ଦେଖାଏ ସ୍ୱର୍ଗର,
ନ ଗଣଇ କୋଲାହଳ ସଂସାର ପ୍ରମାଦ ।
ସୁଧାକର ପ୍ରିୟା ସୁଧାଭଣ୍ଡାର କବାଟ,

---

* ବୁଧଗ୍ରହ ନବଗ୍ରହମାନଙ୍କରେ ଅନ୍ୟାନ୍ୟ ଗ୍ରହମାନଙ୍କ ଅପେକ୍ଷା ଅତିଅଳ୍ପ ଦିନ ରହେ ଏବଂ କେତେଦିନ ଅଦୃଶ୍ୟ ହୋଇଯାଏ, କେତେଦିନ ପୂର୍ବରେ ଏବଂ କେତେଦିନ ପଶ୍ଚିମରେ ଉଦିତ ହୁଏ ।

† ଅବିଚ୍ଛିନ୍ନ

ଦେଇଥାଏ ଯେହ୍ନ ପ୍ରିୟ ଜନକର ପାଇଁ ;
ଅଭିମୁଖ ନୟନକୁ ନ ଦଶେ ସେ ବାଟ,
ଭ୍ରମଇ ସେ ସୁପ୍ତିଦେଶେ ସ୍ୱପନକୁ ପାଇ ।
ଭାବ କବି ଭାବ ରାଜ୍ୟେ ରଖେ ଅଧିକାର,
ପ୍ରତିଭା କଳ୍ପନା-ରଥେ ସାରଥି ଯାହାର ।

୧୨

ଯୋଗୀ ଭୋଗୀ ହୃଦୟର ସେ ପ୍ରମୋଦ ଦାୟିନୀ,
ଯୋଗୀକି ଦେଖାଏ ବଣ ଗହନା ନିଚୟ ;
ଭୋଗୀକି ଦେଖାଏ ଗୃହୁ ମାନସ ମୋହିନୀ,
ଭାବିନୀ ବଦନ ମୃଦୁକାନ୍ତି ମଧୁମୟ ।
ଯୋଗୀ ପାଇଁ ଯୋଗତତ୍ତ୍ୱ ଖାଣଶୁଦ୍ଧମଣି,
ପୁଞ୍ଜ ପୁଞ୍ଜ ଯେନ ଶୋଭେ ରଜନୀ ନିଳୟ,
ଭୋଗୀପାଇଁ ସୁକୋମଳ ସୁଷୁପ୍ତି ଜନନୀ,
ଶଯ୍ୟା, ତହିଁ ବିଷୟର ଚିନ୍ତା ଲଭେ ଲୟ ।
ଦୀପାଲୋକ ଚନ୍ଦ୍ରାଲୋକ ବିଦ୍ୟୁତ ଆଲୋକ,
ରଜନୀ ରାଜ୍ୟରେ ଭୋଗୀ ମୁଗ୍ଧ ଭବଲୋକ ॥

୧୩

ତଏ ଭୁ ବସିଲୁ ଆସି ହୋଇ ଏକାକିନୀ, ?
କପାଇଁ ବକୁଳେ ବସି କରୁଛୁ ରୋଦନ ;
କାନ୍ତ କପାଁ ସଙ୍ଗେ ତୋର ନାହିଁ ଅଭାଗିନୀ ?
କରୁଣ ଭାଷଣେ ତୋର କଣ୍ଠ ଅଛୁ ବନ ।
ଭୁ ପକ୍ଷୀ ସେ ଚକ୍ରବାକୀ ପତି ସୁହାଗିନୀ,

ପ୍ରେମେ କରୁଥିଲୁ କାନ୍ତ ବଦନ ଚୁମ୍ବନି,
ତୋ କୋଳରେ ଗଡ଼ୁଥିଲା ନବ କନଳନୀ,
କମ୍ପୁଥିଲା ତା ଛନନୀ ସିଂରସୀ ଜୀବନ ।
ଅଲଙ୍ଘ୍ୟ ବିଧିର ବିଧି କରନ୍ତେ ଆନ,
ସୁଖ ପଛେ ପଛେ ଦୁଃଖ ବିଧିର ବିଧାନ ।

୨୪

ବିଧିର ଜନନୀ ପୂର୍ଣ୍ଣ ବିଶ୍ୱ ନନ୍ଦିନୀ,
ରହିଛନ୍ତି ବିଷାଦେ କରି ମଳିନ ବଦନ,
ଛାଡ଼ିଯାଇଛନ୍ତି ଏବେ ହରି ପ୍ରାଣପ୍ରିୟା—
ଲକ୍ଷ୍ମୀ, ଶୂନ୍ୟ କରି ତାର ଅଙ୍କ ସିଂହାସନ ।
ବିଧାନ ରଚିଲା ବିଧି ମାତାକୁ ନ ଦେଖି,
ଲେଖିଦେଲା ସୁଖପଛେ ଦୁଃଖ ଏକ ଧାଡ଼ି ;
ପାଉଛନ୍ତି ଦୁଃଖ ଏବେ ନଳିନାଙ୍କ ତେଜି,
ସୁଖ ପଛେ ପଛେ ଆସି ବସିଅଛି ମାତନ୍ତି ।
ଲୋକେ ଯାହା ଭଲ ମନ୍ଦ ଆଚରନ୍ତି ଘରେ,
ଅବଶ୍ୟ ଫଳଇ ତାହା ନିଜର ଉପରେ ।

୨୫

* ବିଷ୍ଣୁଶର୍ମାଙ୍କର ଶଶା କହିଥିଲା ଯାହା,
ସେକଥାକୁ ତିଳମାତ୍ର ନପକାଅ ମନେ ;
କ୍ରୀଡ଼ନ୍ତି ବାରଣଗଣ ଉର୍ଦ୍ଧ୍ୱ ଶୁଣ୍ଡ ବାହା,
ଭଙ୍ଗିତ ଶଶାଙ୍କ ଛାୟା ସରସୀର ବନେ ।
ଦ୍ୱିତୀୟ ଶଶାଙ୍କ ସମ ମୂଳ କମଳର,

* ଶଶା ଓ ଗଜର କଥା ହିତୋପଦେଶରୁ ଅନୁସନ୍ଧେୟ ।

ଖାଅନ୍ତି କମ୍ବୃଡ଼ ଜଳେ କରି ଉନ୍ମୂଳନ;
ନଳିନୀର ଦଶା-ଏବେ ମନ୍ଦ ମନ୍ଦତର,
ରକ୍ଷାର ଉପାୟ ଆଉ ନାହିଁ ଏ ଭୁବନ ।
ନିଜ ମୂର୍ଖେ ଦେଲା ବିଧି ଏଡ଼େ ଅଧିକାର,
ବିଧିର ଏ ବିଧାନକୁ ସହସ୍ର ଧିକ୍କାର ।

୧୬

ଯଥା ନବେ ହେଲେ ଶୋଭା-ସାମ୍ରାଜ୍ୟ-ସମ୍ରାଟ,
ନୟନ ରଞ୍ଜନ ବିଧୁ ଜ୍ୟୋତିଷଶେଖର,
ରଖିଥିଲେ ବାଛି ବାଛି ଅତି ଅଳ୍ପ ଥାଟ,
ଉଜ୍ଜ୍ୱଳ ଉଜ୍ଜ୍ୱଳ ଋକ୍ଷ ଯୋଗ୍ୟ ସହଚର ।
ଥିଲା ଯେଉଁ ଋକ୍ଷଙ୍କର ପ୍ରତିଭା ପ୍ରବଳ,
ପାଇଥିଲେ ସମାଦରେ ସମୁଚ୍ଚ ଆସନ ;
ପ୍ରୀତିଯୋଗେ ନ ପୂରିଲା ଯାହା ଯାହା ବଳ,
ଦୂରେ ରହିଗଲେ ହୋଇ ମଳିନ ବଦନ ।
ମହତ ମହତ ସଙ୍ଗେ ହୁଏ ସୁଶୋଭିତ,
ଅମହତ ହୁଏ ତହିଁ ସଦା ବିକ୍ଷୋଭିତ ।

୧୭

କନ୍ଦର ଭିତରେ ରନ୍ଧ୍ର-ଭେଦ-ଚନ୍ଦ୍ରକର,
ଦଶେ କୃଷ୍ଣ ମଖମଲେ ବଜ୍ରଖଣ୍ଡ ଦର ; *
ବଧୂଙ୍କ ତା ମାରଛନ୍ତି ପ୍ରେମାସ୍ତ୍ର ଶର,
୧ ସ୍ନୁଷା ସଦନ ଶଯ୍ୟା ତମେ ଲକ୍ଷ କର ।

---

* ବଜ୍ର—ହୀରା ।

୧ ତମ—ରାହୁ ( ସିଂହିକାପୁତ୍ର ) ସୁତରାଂ ଗିରିକନ୍ଦର ତାହାର ଜନ୍ମସ୍ଥାନ ହେବା ସ୍ୱାଭାବିକ ।

ବନଗର୍ଭେ ଗୃହଂ ଝଣ୍ଡ କୌମୁଦୀନ କର,
ମନେହୁଏ ଯନ୍ତ୍ରାଘ୍ରିତ ତମିରର ପିଠି ;
ପଲ୍ଲବର ହୋଇଅଛି ନାନାବିଧ ଶର,
ଧାବମାନ ଚନ୍ଦ୍ରମାର ଲଘୁ ଦସ୍ତୁଁ ପିଠି ।
ରୁଧିର ଝରଇ କିନା ହିମବନ୍ଦୁ ଛଳେ,
ପଡ଼ୁଛି ଛପିର ମୁହଁ ମାଡ଼ି ଭୂମିତଳେ ।

୧୮

ଦେଖିଲେ ପ୍ରକୃତ ଚକ୍ଷ୍ୟେ ଶାନ୍ତିର ବିରାଜ,
ଶାନ୍ତେବହେ ସୁଶୀତଳ ଧୀର ସମୀରଣ ;
ଶାନ୍ତ କୋଳେ ସୁଖସୁପ୍ତ ମାନବ ସମାଜ,
ଶାନ୍ତ ଲଭିଅଛି ଘରେ ଘରେ ହୁତାଶନ ।
ଶାନ୍ତ ପାଇ କାନନର କୁସୁମ ସକଳ,
ପ୍ରଫୁଲ୍ଲ ବଦନେ କଲେ ଗନ୍ଧ ବିତରଣ ;
ଘନଦେହ ପର୍ବତର ସୁଶୀତଳ ଜଳ,
ଧରଣୀ ମଣ୍ଡଳ ହେଲା ଶାନ୍ତ ନିକେତନ
ଅଚ୍ଛିନ୍ନ ପ୍ରଲମ୍ବ ସ୍ୱରେ ଝିଲ୍ଲିକା ନିସ୍ୱନ,
ଚତୁର୍ଦ୍ଦିଗେ କଲାନେହ ଶାନ୍ତ ବିଘୋଷଣ ।

୧୯

ଗାଇଲେ ଶାନ୍ତିର ଗୀତ ମଧୁପ ମଣ୍ଡଳ,
ବୁଲବୁଲ ଜଳ, ସ୍ଥଳ, ବନ, ଉପବନେ,
ବଜାଇଲେ ଶାନ୍ତିବାଜା ସଉତ ସକଳ.
ପାଦପ ପଲ୍ଲବ ତଳୁ ମର ମର ସ୍ୱନେ ।

ସୁଖାନ୍ତେ ନାଚିଲେ ଜଳେ ତରଙ୍ଗ ପଟଳ,
ତହିଁସଙ୍ଗେ ଯୋଗଦେଲେ ମୁଦେ ମୀନ ଗଣ ;
ନାଚିଲେ ମେଦିନୀ ବକ୍ଷେ ଶ୍ୟାମ ଦୂର୍ବାଦଳ,
ବର୍ଷୀରାଜ୍ଞ ନାଚ ନାଚ ମଣ୍ଡିଲା ଗଗନ ।
ଶାନ୍ତରସେ ମଜ୍ଜି ବିଧୂ ଗ୍ରହ ତାରା ସର୍ବେ,
ନୃତ୍ୟକଲେ ପ୍ରତିବିମ୍ବ ରୂପେ ଜଳଗର୍ଭେ ।

୩୦

ଶୁଣିଲେ ପଶ୍ଚିମେ ବଧୂ ସାଗର ଗର୍ଜ୍ଜନ, *
ଦେଖିଲେ ତୁଷାର ମାତ୍ର ଅପୂର୍ବ୍ବ କୂଳ ;
କରିବାକୁ ତହୁଁ ଜଳରାଜ୍ୟ ସୁଶାସନ,
ପଶ୍ଚିମକୁ ଗଲେ ସଙ୍ଗେ ଘେନି ରଘୁକୁଳ ।
ବରୁଣ ପୁର ପ୍ରାଚୀର ପ୍ରହରୀ ଅଚଳ,
ଲଂଘି ରହସ୍ୟମୟ ପୁରେ ହୋଇ ଆମନ୍ତ୍ରିତ ;
ଜନକର ସ୍ନେହମୟ କୋଳ ସୁକୋମଳ,
ଶଯ୍ୟାରୂପେ ପାଇ ସୁଖେ ହେଲେ ନିମଜ୍ଜିତ ।
କିବା ଜଳ କିବା ସ୍ଥଳ କି ନଗ ନଗର,
ଯହିଁ ଯାଏ ତହିଁପାଏ ଗୁଣୀ ସମାଦର ।

* ପୂର୍ବସାଗର ( ପ୍ରଶାନ୍ତମହାସାଗର ) ଅପେକ୍ଷା ପଶ୍ଚିମସାଗର ( ଆଟଲାଣ୍ଟିକ ମହାସାଗର )ର ଉତ୍ତାଳ ତରଙ୍ଗ ଅତି ଭୟଙ୍କର ।

## ବସନ୍ତ ବାସର ।

ପାହିଲା ରଜନୀ ଯବ ଦିଶିଲା ଉଜ୍ଜ୍ୱଳ,
ଉଜ୍ଜ୍ୱଳ ଦିଶିଲା ଊର୍ଦ୍ଧ୍ୱେ ଆକାଶ ମଣ୍ଡଳ ।
ଅନ୍ଧାରେ ଯା ଦିଶୁଥିଲା ଆଲୋକେ ତା ନାହିଁ,
ଭିନ୍ନ ଦୃଶ୍ୟ ଠିଆହେଲା ଆଲୋକର ପାଇଁ ।
ଯେତେବେଳେ ଥିଲୁ ଅମ୍ଭେ ତିମିର ମଗନ,
* ସାହାଥିଲେ ନିକଟର ବନ୍ଧୁ-ଗ୍ରହଗଣ ।
ସାନ ହୋଇ ବଡ଼ରୂପେ କଲେ ଉପକାର,
ଅବଶ୍ୟ କରିବୁ ଅମ୍ଭେ ସେକଥା ସ୍ୱୀକାର ।
† ବଡ଼ ବଡ଼ ବନ୍ଧୁ ଗ୍ରହ ବଡ଼ଦୂରେ ଥାଇ,
ଯଥା ସାଧ୍ୟ ହିତ କରୁଥିଲେ ଅମ୍ଭପାଇଁ ।
ତହୁଁ ଦୂରେ ଦୂରେ ଥାଇ ତାରା-ବନ୍ଧୁ-କୁଳ,
ବନ୍ଧୁତା ଦେଖାଇ ହୋଇଥିଲେ ଅନୁକୂଳ ।

---

* ବୁଧ, ଶୁକ୍ର, ମଙ୍ଗଳ ଗ୍ରହ ନସ୍ତ ପୃଥିବୀର ନିକଟରେ ଅଛନ୍ତି ସେମାନେ ଅନ୍ୟାନ୍ୟ ଗ୍ରହ ଅପେକ୍ଷା ଛୋଟ ହେଲେହେଁ ନିକଟବର୍ତ୍ତୀ ହେତୁ ଅଧିକ ଉଜ୍ଜ୍ୱଳ ଦିଶନ୍ତି ।

† ବୃହସ୍ପତି, ଶନି, ୟୁରେନସ ଓ ନେପଚ୍ୟୁନ ଗ୍ରହମାନେ ବୃହଦାକାର ଓ କ୍ରମଶଃ ଦୂରବର୍ତ୍ତୀ ।

ଯେତେଦିରେ ଥିଲେ ବନ୍ଧୁ ଅପଦ ସମୟେ,
ଅନୁକୂଲ୍ୟ ପ୍ରଦର୍ଶାଇ ଥାନ୍ତି ସୁହୃଦୟେ ।
ନ ଦିଶିଲେ ଆଜି ସେହି ଜ୍ୟୋତିଷ୍କ ସକଳ,
ଯହିଁ ଥିଲେ ତହିଁ ହେଲା ତାଙ୍କ ଅସ୍ତାଚଳ ।
କେ ଥିଲେ ପୂରୁବେ କେବା ମଧ୍ୟ ଆକାଶରେ,
କେତେ ତଳ ପଡ଼ି ଥିଲେ ପଶ୍ଚିମ ଦିଗରେ ।
ଆଜି ଥିଲେ କେ ଉତ୍ତର କେ ଅବା ଦକ୍ଷିଣ,
ଯେ ଯହିଁରେ ଥିଲେ ତହିଁ ହୋଇଗଲେ ଲୀନ ।
ପୂର୍ବଦିଗୁଁ ଉଠି ଏକ ଆଲୋକ-ଲହରୀ,
କ୍ଷଣକରେ ଦ୍ୟୁଲୋକକୁ ଦେଲା ଗ୍ରାସ କରି ।
ସେ ପ୍ରଳୟ-ଲହରୀର ଆକ୍ରମଣ ସହି,
ଦୁଇ ଏକ ଜ୍ୟୋତିଷ୍କର ଯାଇଥିଲେ ରହି ।
ଆନାସା ପ୍ଲାବନ-ବେଗେ ହୋଇ ସେ ଅସ୍ଥିର,
ଅନାୟତ୍ତ ବଶେ ଶେଷେ ମଳାଇଲେ ଶିର ।
ଜ୍ୟୋତି ଆସି ବିନାଶିଲା ଜ୍ୟୋତିଷ୍କର ଗଣ,
ବେଣୁ ରୂପୀ ବନ-କାଷ୍ଠ କାଟେ ଯଥା ବନ ।
ନବ ବନ୍ଧୁ ଜନମିଲେ ବାସବ-ଭବନେ,
ଅନୁଦ୍ଧ-ଅନଳ-ଶିଖା ଉଠିଲା ଗଗନେ ।
ଦେଖୁଁ ଦେଖୁଁ ଆସିଗଲେ ସେ ଦିନ-ବାନ୍ଧବ,
ମଧୁର କିରଣେ କଲେ ଶୀତଳ ଜଗବ ।
ପ୍ରକାଣ୍ଡ ମୂରତି ଧରି ଦେଲେ ଦରଶନ,
ଆହ୍ଲାଦରେ ହରିନେଲେ ହୃଦ ସଙ୍ଗେ ମନ ।

ଆଉଁଷି କବୋଷ୍ଣ କରେ ଗିରିତରୁ ଶିର,
ପୋଛିଦେଲେ ପ୍ରକୃତିର ନୟନର ନୀର ।
ହସିଲା ଧରଣୀ ରଙ୍ଗ ପଲ୍ଲବ-ଦଶନେ,
ଶାଳ୍ମଳୀ ଲାଗିଲା ରଙ୍ଗ କୁସୁମ ବର୍ଷଣେ ।
ଲାଗିଲା କୌତୁକ ବନେ ଅଟବୀ-ଦେବୀର,
ଉଡ଼ିଲା କମଳା ଗୁଣ୍ଡି ସୁରଙ୍ଗ ଅବୀର ।
ଧାତକୀ କୁସୁମ ରଙ୍ଗ ନବ କିଶଳୟ,
କାନନ ଅଙ୍ଗକୁ କରିଦେଲେ ରଙ୍ଗମୟ ।
ଜଳରେ ରକତ-ପଦ୍ମ ସ୍ଥଳେ ସ୍ଥଳ-ପଦ୍ମ,
ଅବନୀ ରଞ୍ଜିତ କଲେ ହୋଇ ପଦ୍ମ ପଦ୍ମ ।
ଜଳରେ ଜଳଜଦଳ ସ୍ଥଳେ ଦୁର୍ବାଦଳ,
ଶ୍ୟାମଳ ବର୍ଣ୍ଣରେ କଲେ ଲୋଚନ ଶୀତଳ ।
ଊର୍ଦ୍ଧ୍ୱରେ ଗଗନ ତାର ପ୍ରତିବିମ୍ବ ତଳେ,
ନୀଳିମାରେ ଭୁବନକୁ ଆଚ୍ଛାଦିତ କଲେ ।
ପ୍ରପାତ-ଶୀକର ପୁଣି ସାଗର-ତରଙ୍ଗେ,
ଇନ୍ଦ୍ରଧନୁ ବିଳସିଲା ବହୁବିଧ ରଙ୍ଗେ ।
ନୀଳବାସ ବେଶେ ଉଭା ଦୂରସ୍ଥ ଅଚଳ,
ନିକଟ ପର୍ବତ ବାସ ଘେନିଲା ପାଟଳ ।
ସୌଧେ ସୌଧେ ବିରାଜିଲା ଧବଳ ବରଣ,
ମକ୍ଷିକା ନଥିଲୀ କଲେ ତାଅଂଶ ଗ୍ରହଣ ।
ନୀଡ଼ତେଜି ବିହଙ୍ଗମେ ତରୁଡାଳେ ବସି,
ଜୀବନ-ସଂଗ୍ରାମ ପଣ ଧନୁ ଗୁଣ କସି ।

ରଞ୍ଜକରେ ବ୍ୟୋମ ସାଜ୍ଜ କରି ସୁସଜ୍ଜିତ,
ଦଳବାନ୍ଧ ପକ୍ଷୀ ବ୍ୟୂହ କଲେ ବିରଚିତ ।
ଆଳସ୍ୟ-ଅସୁର ରଣେ ମୂର୍ଚ୍ଛିଥିଲେ ଜନେ,
ସନ୍ଧ୍ୟା ଆସି ଢାଳିଦେଲା ଅମୃତ ବଦନେ ।
କଣ୍ଠେ କଣ୍ଠେ ହେଉଥିଲା ନେତ୍ର ଉନ୍ମୀଳନ,
ନବ ବନ୍ଧୁ ନିଜକରେ ଦେଲେ ସୁଧାଞ୍ଜନ ।
ନବ ପ୍ରାଣ ନବ ବଳ ଲଭି ନବ ମନେ,
ଜନ ଗଣ ବିଚରିଲେ ସଂସାର ଗହନେ ।
ପ୍ରାଚୀର ମସ୍ତକେ ବସି ଚଟକ ନିକର,
ପ୍ରାଚୀର ମସ୍ତକେ ଚୁମ୍ବି ନବ ଦିନକର ।
ବିହଙ୍ଗ ସ୍ୱଭାବେ ହେଲେ ଫୁଲ୍ଲ ଅପଘନ,
ବିହଙ୍ଗ ସ୍ୱଭାବେ ତେଣେ ଫୁଟି ସଂହନନ ।
ମକ୍ଷିକପଟଳ ପାଇ ତପନ-କିରଣ,
ପୁନଃ ପୁନଃ ଅଧଃ ଊର୍ଦ୍ଧ୍ୱେ କଲେ ସନ୍ତରଣ ।
ପତଙ୍ଗ ଉତ୍ଥାନେ ଏଣେ ଉତ୍ଥିତ ପତଙ୍ଗ,
ନବରଙ୍ଗ କିରଣରେ କଲେ ନବରଙ୍ଗ ।
ପଶୁମାନେ ନିଦ୍ରାତେଜି ଉଠିଲେ ଶୟନୁ,
ସମ୍ମୁଖେ ଉଜ୍ଜୃମ୍ଭଣେ ସଳଖିଲେ ତନୁ ।
ଡାଳୁଁ ଡାଳେ ଡେଇଁ ଲୀଳା ଲଗାଇଲେ କପିଏ,

---

ପ୍ରାଚୀର-କାନ୍ଥ   ପ୍ରାଚୀ-ପୂର୍ବଦିଗ   ବିହଙ୍ଗ-ପକ୍ଷୀ ଓ ସୂର୍ଯ୍ୟ
ପତଙ୍ଗ-ସୂର୍ଯ୍ୟ ଓ ଶଲଭ   ନବରଙ୍ଗ-ନୂତନ ଜଳରଙ୍ଗ ଓ ନାନା କୌତୁକ ।

କେନ୍ଦୁ ଫଳେ ସୁଧା ଲଭୁ ପାଉ ଥିଲେ କି ସେ ।
ଏହିକାଳେ କମଳିନୀ ଶୁହିଁ ଷଡ଼ମୁଖ
ସଜଳନୟନ ହୋଇ ଦେଖାଇଲା ଦୁଃଖ,
କହି ନପାରିଲା ଦର ସ୍ଫୁରିତ ବଦନା,
ମଧୁକର ଅସି ସବୁ କଥା କଲା ଜଣା,
ବିନୟେ ବୋଇଲା ଦେବ ଦେବ ତ୍ରିଭୁବନ
ଲୋକଙ୍କର ବ୍ୟବହାର କି କହିବି ଅଜ ;
ମୁଁ ଦୀନ ଭିକ୍ଷୁକ ନିତ ଦ୍ୱାରେ ଦ୍ୱାରେ ବୁଲି
ମଧୁ ଭିକ୍ଷା କରୁ ଥାଏଁ କାନ୍ଧେଧର ଝୁଲି,
କମଳିନୀ ଠାରେ ମୋର ବଡ଼ ଆଶା ଥାଏ
ତା ମୁଷ୍ଟି ମଧୁରେ ଝୁଲି ଗୋଟି ଭରି ଯାଏ,
ନଷ୍ଟ ଭିଖାରିର ଲୋକେ ନ ଥାଏ ଆଦର;
ଏହା ଭାବି ଅବେ ଭ୍ରମି ଚଲି ଦେଶାନ୍ତର ।
ଦେଖିଲି ମାନବଙ୍କର ତହିଁ ଅତ୍ୟାଚାର
ସ୍ୱାର୍ଥ ପାଇଁ ନ କରନ୍ତି ଧର୍ମର ବିଚାର ।
ମହୁମାଛି ମାନେ ମୋହୋ ପରି ଭିକ୍ଷ କରି
ମଧୁ-ଧନ ରଖିଥିଲେ ଭଣ୍ଡାରରେ ଭରି
ମାନବେ ପ୍ରବେଶି ତହିଁ ଲଗାଇ ଅନଳ
କାଢ଼ି ତାଙ୍କୁ ନେଇ ଗଲେ ସେ ଧନ ସକଳ ;
ଗତ କାଲି ଅସୁଥିଲି ଏହି ସରୋବରେ
ବଡ଼ ବଟ ବୃକ୍ଷ ଟିଏ ଦେଖିଲି ବାଟରେ,
ତା ମୂଳରେ ଲୋକମାନେ ହୋଇ ହୋଇ ଠୁଳ
ଶୀତଳ ଛାୟାକୁ କରୁଥିଲେ ସୁଶୀତଳ ;

ଜନ୍ମକାଳୁଁ ପୁଷ୍ପ ତାର ଦେଖି ନାହିଁ କେବେ
ଦେଖିଲି ସୁରମ୍ୟ ରଙ୍ଗ ଭଙ୍ଗ କସ ଏବେ,
ମଣ୍ଡିତ ହୋଇଛି ତହିଁ ବଟ-କଳେବର
ବୋଇଲି ନିଶ୍ଚୟ ପୁଷ୍ପ ଦେବ ପାଦପରି
କବେ ଯାଇ ବସି ଗୁମ୍ଫି ଆରମ୍ଭିଲି ଲୋଭେ
ଅଣୁମାତ୍ର ମଧୁ ବିନା ବାହୁଡ଼ିଲି କ୍ଷୋଭେ,
ଲକ୍ଷ ନୂତନ ସେ ପାଦପ ଶମ୍ଭୁଙ୍କ ପ୍ରତାପେ
ଅସଂଖ୍ୟ ପାଦରେ ଉଭା ହୋଇଅଛୁ ଆପେ,
ଏଡ଼େ ଅଘଟନ ଘଟିଲା କରି ମୋତେ ରୁଷ୍ଟ
ମାନିଲି କେବଳ ନିଜ କପାଳ ମୋ ଦୁଷ୍ଟ ;
ସେ ତରୁ ପ୍ରଶାଖାଟିଏ ଧରନ୍ତେ ବାରଣ
ଲୋକ ମାନେ ମିଳି ତାଙ୍କୁ କଲେ ନିବାରଣ,
ବାରଣେ ଭଙ୍ଗିଲା ତହୁଁ ଘର ଅଭିମୁଖେ
ପଦ୍ମିନୀ ସଦ୍ମରେ ଆସି ପ୍ରବେଶିଲା ସୁଖେ,
ସୁକୁମାରୀ-ପଦ୍ମିନୀ ତ କଲା ଆକ୍ରମଣ-
ନସହି ମୁଁ କଲି ଗଜ କପୋଳେ ଦଂଶନ,
ଶଙ୍କା-ନିଆଜନ୍ତେ ଗଲି ଦଉଡ଼ି ବଣରେ
ଜୀବ ଜାଳ ଗୁହାଉଳି ପଶି ଘରେ ଘରେ;
ଲୋକମାନେ ମୋତେ ଥିଲେ କର୍ଣ୍ଣେ ଖୋଷିଫୁଲ
କାରଣ ସେ କର୍ଣ୍ଣ ପାଶେ ହୋଇ ମୁଁ ଆକୁଳ ।
ସଖୀ ମୋତେ ତଡ଼ିଦେଲେ ଅଇଲି ପଳାଇ
ଶମ୍ଭୁଙ୍କୁ ଆସିଛି ଏବେ ସେ କଥା ଜଣାଇ,
ଲୋକମାନେ କହିଥାନ୍ତି ସତ୍ୟ ଭାଗ ଭାର

କପଟ ଜାଲକୁ ତାଙ୍କ ପ୍ରଭୁ ଏ ବେଭାର,
କୁସୁମ କହ୍ଲାନ କଣ୍ଠେ ଏଣେ ସମାଦର
ଧର୍ମ ଅବତାର ଯାହା ଇଚ୍ଛା ତାହା କର ।
ତରୁଣ ଭାସ୍କର ଉଚ୍ଚ ବୃଷ କଳେବର
ମହୀଷ ଲମ୍ବାଡ଼ ଥିଲେ ଅପ୍ରଖର ଜ୍ୱର
ସେତିକ ବେଳରୁ ତେଜ ପୂର୍ଣ୍ଣ ଅପଘନ
କଠୋର ନୀତିରେ କଲେ ଅବନୀ ଶାସନ,
ମୁଠାରେ ନ ରଖିଲେ ନବଜନ୍ତୁ ଭାବ
ସ୍ୱଜନ୍ମ ପ୍ରଗ୍ରହ କଲେ ପ୍ରକାଶି ପ୍ରଭାବ ;
ଏକଛତ୍ର ଚକ୍ରବର୍ତ୍ତୀ ତେଜ ବିକର୍ତ୍ତନ
ପ୍ରଚଣ୍ଡ ମୟୂଖାବଳୀ କଲେ ପ୍ରବର୍ତ୍ତନ ;
ପ୍ରଚଣ୍ଡ ଶାସନ ଦଣ୍ଡ କରେ ଧରି ଦିନେ
ପ୍ରକାଣ୍ଡ ଗଗନ ଗଜ ପୃଷ୍ଠେ କଲେ ଛଳେ ;
ବଢ଼ିଲା ବେଳକୁ ବେଲ ତାହାଙ୍କ ପ୍ରତାପ
ଅଧିକୁ ଅଧିକ ଦେଲେ ଧରଣୀକି ତାପ ;
ଗାଢ଼େ କଲେ ଧରଣୀର ଜୀବନ ଶୋଷଣ
ନ ବୁଝିଲେ ଦେବ ତହିଁ କପଟ ପୋଷଣ ;
ଦେଖିଲେ ମହୀଶ ସାହା ଦେହଅଙ୍ଗ ଶସ୍ୟ
ତା ପ୍ରତି ନିଷ୍ଠୁର ହେଲେ ତେଜ ସ୍ୱାମୀ ମାୟୁ ।
ଶସ୍ୟ କରଥିଲା ଯେବେ ଭୂମି ଅଧିକାର
କ୍ରମରେ ହଉଲେ କର ସ୍ୱକର ବିସ୍ତାର
ସ୍ୱାମୀ ଅବାଧତା ଗୃହେଁ ଶସ୍ୟ ଅପସ୍ମୃ
ରହିଗଲା ପାଦପର ତଳ ଆଶ୍ରାକରି ;

ମସ୍ତକ ଉପରେ ଚଢ଼ି ପ୍ରଚଣ୍ଡ ତପନ
କଷ୍ଟିଧତେ ବିକର୍ଷିତ କଲେ ଜୀବଗଣ,
ପ୍ରକୀପୁଞ୍ଜ ବିଚଳିତ ହୋଇ ରବି ହାସେ
ଆଶ୍ରୟ ଲୋଡ଼ିଲେ ଯାଇ ଛାୟା ରାଣୀ ପାଶେ,
ଦର୍ପଣେ ଫଳିତ ହୋଇ କାଚବାଡ଼ୁ ଭେଦ
ଛିଞ୍ଚିଲେ ଖାମ୍ଭର ଗୃହେ ଛାୟା ତନୁ ଛେଦ ।
ଛାୟାକୁ ଧରିବା ଲାଗି ହୋଇ କ୍ରୋଧଭର
ଲୋହିତ ଲୋର୍ଣ୍ଣ ଛତ୍ରମାନ ଲମ୍ବାଇଲେ କର,
ତପନ ତାପିରେ ହେଲା ଧରଣୀ ବିକଳ
ଟିଶିନା ଲମ୍ବାଇ ଶାଳି ଲୋଡ଼େ ଛାୟା ଜଳ
ତରୁଡାଳେ ବସି ପକ୍ଷୀ ବିକୃତ ବଦନ
କ୍ୱଚିତ ଶୁଭଇ ତାରି ନିଶୀର୍ଣ୍ଣ ନିସ୍ୱନ,
କ୍ୱଚିତ ଉଡ଼ଇ ଏକ ବୃକ୍ଷୁ ବୃକ୍ଷାନ୍ତର
ଅବଲମ୍ବେ ବସେ ହୋଇ ଆତପ କାତର ;
କୁ କାଳ ଅସିଲା ବୋଲି ପାରାବତଗଣ
କୁ କୁ କୁ କୁ କୁ କୁ ରବି କଲେ ବାଦଘୋଷଣ
ନିସ୍ତେଜ ଲୋଚନ ନବ କିଶଳୟ ଚୟ
ନତ ମୁଖେ ଲୋଡ଼ୁଥାନ୍ତି ଛାୟାର ଆଶ୍ରୟ ।
ଗୋରୁଏ ପଡ଼ିଲେ ଆଶ୍ରା କରି ତରୁତଳ
ଧୀରେ ଧୀରେ କରୁଥାନ୍ତି ରୋମନ୍ଥ କେବଳ
ମାନବ ଲୋକେ ଆଶ୍ରାକଲେ ପ୍ରାସାଦର ଛାଇ,
କେ ଅବା ରହିଲା ନିଜ କୁଟୀରକୁ ଯାଇ ;
ପଥିକେ ଚାଲିଲେ ପଥ ଛତ୍ର ଧରି କରେ

ନ ଗଲେ ନ ଚଳେ ବୋଲି ବିପ୍ରର ମନରେ ;
ହେଲେହେଁ ତପତ ଶାନ୍ତ ଲଭିବା ଆଶାରେ
ମନୁଷ୍ୟ ସକଳ ଯାଇ ପଡ଼ିଲେ କାସାରେ ;
ପଲ୍ୱଲ ଭିତରେ ପଶି ସକଳ ଦ୍ୱିରଦ
ତପତ ତରଳ ପଙ୍କେ କଲେ ଅବଗାହ ;
ଝିଲ୍ଲିର ଶବଦ ପୂର୍ଣ୍ଣ ନିକୁଞ୍ଜର ସଲିଳେ
ବନ ମତଙ୍ଗଜଗଣ ପ୍ରବେଶି ଖେଳିଲେ ;
ସର୍ବଂସହା ସହିଲେକି ସେ ତପ୍ତ ପ୍ରହାର
ସହିଲା ବୋଲି ହା ହେବ ଲାଭ ଉପକାର
* ଜୀବନ କଣିକା ଦେବା ନୁହଇ ଅସାର
† ସେ କଣିକା ଶୁଣି ହୁଏ ଅମୃତର ଧାର ;
କଣିକା କଣିକା ଯାଉଅଛି ଯେ ଜୀବନ
ଶୋଷନ୍ତିକ ଗ୍ରାସିବ ତାହା କାଳେ ହୋଇ ଘନ ।
ଯମର କଙ୍କଣ ବୋଲି ନ ଛାଡ଼ିବ ଭୟ
‡ କର୍କଟ ଉଦର ଜଣ୍ଟେ କରିବ ଅଥୟ ;
§ ଦିହରେ ବରଜ ହିଁଘ କାଳିକା ବତାର ॥
ତାପ ବର୍ଷି ନ ରଖିବ ଅଭ୍ର ସନ୍ଧିହାର ;
ଦେଖୁଁ ଦେଖୁଁ ଦିବାକର ଖସିଲେ ଗଗନୁ
କ୍ରମେ କ୍ରମେ ତେଜ ଛାୟା ଟୋଇଗଲା ମନୁ ;
ଯେଉଁଠାରେ ଉପରେ ହୋଇଥିଲେ ସମୁଚ୍ଛ୍ରିତ
ତେଉଁଠାରେ ତଳରେ ଯାଇ ହେଲେ ଉପନୀତ,

---

* ଜୀବନ — ଜଳ ।
ଜୀବନ — ପାଣି
[illegible]
† ଅମୃତ — ଜଳ ।
§ ଜନ — ମେଘମାଳା ।

ନ ହୁଅନ୍ତି ଶିଶୁ ଯୁବା ଅଥବା ସ୍ଥବିର
ଅଟଳ ବୟସ ସ୍ଥିତବାସ ପୃଥିବୀର ;
ଅଜ ଯେଣୁ ଅସ୍ତ ହେଲେ କାଲି ସେ ଉଦିତ
ତାହାଙ୍କ ଏ ଭାବେ ଏକା ବ୍ରହ୍ମ ଉପମିତ,
ପ୍ରକାଶିତ ହେଲେ ବ୍ରହ୍ମ ପ୍ରାଣୀଙ୍କ ଅନ୍ତରେ
ବ୍ରହ୍ମ ଲୁଚିଗଲେ ଜନ୍ମ ପ୍ରାଣମାନେ ମରେ ;
ଈଶ୍ୱର ଅନ୍ତର ହେଲେ ବିନାଶନ୍ତି ଶେଷ
ଈଶ୍ୱର ମନରେ ନାହିଁ ସୁଖ ଅବା କ୍ଳେଶ,
ଏଣୁ ବ୍ରହ୍ମ ପ୍ରାପ୍ତେ ଜନ ଆହ୍ଲାଦ ଆକାଶ
ଯାଇ ନ ପାରଇ କେବେ ବିକାରର ପାଶ,
ପ୍ରାଣୀଙ୍କୁ ଯଦ୍ୟପି ଭୟ ଶୋକ ମୋହ ଆଦ
ନ ପାରନ୍ତି ବ୍ରହ୍ମଙ୍କର ଅଶୁଭ ସମ୍ଭାବ,
ଯେ ପର୍ଯ୍ୟନ୍ତେ ଦେଖନ୍ତି ରବି ଏହି ଗାତ୍ରେ ହନ
ବ୍ରହ୍ମରେ ଜଡ଼ିଲେ ପ୍ରାଣ ହୁଏ ଦୁଃଖ ହୀନ ।
ହୃଷ୍ଟ ମନ ସେ ପରମ ବ୍ରହ୍ମରେ ତନ୍ମୟ,
ତା ପରେ ଜଗତ ହେବ ସୁଖର ଆଳୟ ।
କୋଟି କୋଟି ସୂର୍ଯ୍ୟ ଯାହା କରେ କ୍ରୀଡ଼ନକ,
ପ୍ରେମେ ଜ୍ଞାନ କରେ ତାଙ୍କୁ ଭୁବନ ପାଳକ ।
କରନ୍ତି ସେ ସାନ୍ତ୍ୱନାକ ଦୁଃଖ ଭାଜନର,
ଶୋକ ମୋହ ନ କରନ୍ତି ପାଶେ ତାଙ୍କୁ ଡର ।
ସେହି ଏକା ଜୀବନର ଅନନ୍ତ ବାନ୍ଧବ,
ତାଙ୍କ ଯୋଗୁଁ ଜଗତରେ ସକଳ ବିଭବ ।
ଜଗିଛନ୍ତି ଜୀବପରେ ଜାଗ୍ରତେ ସ୍ୱପନେ,

ଘର ଘର ଅପସ୍ୱ ନ ଦେଖନ୍ତି ମନେ ।
କଦାପି କୁତ୍ରାପି ଯଦ ହୋଇଯାଏ ଘଟ,
ତାହା ପୂର୍ଣ୍ଣ କରିବାକୁ ହୋଇଥାନ୍ତି ବ୍ୟସ୍ତ ।
ପ୍ରତି ଜୀବ ପ୍ରତି ତାଙ୍କ ଏହି ବ୍ୟବହାର,
ପ୍ରତିକ୍ଷଣେ କରୁଛନ୍ତି କିଏ ଉପକାର ।
ତାଙ୍କର ଆଜ୍ଞାରେ ଗ୍ରୀଷ୍ମ, ବରଷା, ଶରଦ,
ହେଉଛନ୍ତି କାଳ ଚକ୍ରେ ଭୂମି ହିତ-ପ୍ରଦ ।
ହେମନ୍ତ, ଶିଶିର ଆସି ନେଲେ ଅବସର,
ହୃଦ ସାଥି ଆସିଅଛି ବସନ୍ତ ବାହାର ।
କରୁଅଛି ପାଦପଙ୍କ ଜୀର୍ଣ୍ଣ ସଂସ୍କରଣ,
ମାନବ ଅଙ୍ଗରେ ନବ ରକ୍ତ ସଞ୍ଚରଣ ।
ପ୍ରଭାତେ, ପ୍ରଦୋଷେ ଦେଇ ମଧୁର ପବନ,
ପଲ୍ଲବିତ କରୁଅଛି ମାନବ ଜୀବନ ।
ଅମଳ କମଳ ଜଳେ, ଉପବନେ ମଲ୍ଲୀ,
କାନନେ ନିସର୍ଗ କୋଳେ କୁସୁମିତ ବଲ୍ଲୀ,
ନବୀନ ଜୀବନେ ହେଉଛନ୍ତି ଉଲ୍ଲସିତ,
ତାହିଁ ସଙ୍ଗେ ମନ ଥରେ ହୁଏ ସୁଭାସିତ
କର ମହାମହିମଙ୍କ ମହିମା ସ୍ମରଣ
ନିଅ ସେ ମଙ୍ଗଳମୟ ଚରଣେ ଶରଣ ।

— ୫୦ —

# ସୋମନାଥ ବିଜୟ ।

୧

ଦେବଶ୍ରିଦବ ସୋମନାଥ ଭୂତ ସହଚର
ଜ୍ଞାନ ନୟନରେ କର ଉର୍ଦ୍ଧ୍ୱ ଦର୍ଶନ,
ଦୂରେ ମେଲ ଛାଡ଼ି ଅସି କଣ୍ଠଅସ୍ଥି ଘଟ
ମନୋହର ସ୍ଥାନ ଖଣ୍ଡି କର ନିର୍ବାଚନ,
କାମୃତ୍ୟେ ଗହ୍ୱର ଯାର ଛଟର ସାଗର
ସୈକତଶତଦଳ ମାଳେ ମଣ୍ଡି ଅପଘନ,
ଧନ୍ୟେ ବାଳିବନ୍ଧା ଟଙ୍କି କମଳ ଅକର
ଆପାଦମସ୍ତକ ସେତୁ ସୋପାନ ସମ୍ପନ୍ନ,
ସୋପାନ ପଥରେ ଉଠି ବାଳିଙ୍କା ଜଳ
ନଷ୍ଟ ଧୋଉଥିଛି ତୁମ୍ଭ ଚରଣ କମଳ ।

୨

ଦକ୍ଷିଣରେ ମହାନଦୀ ହୁଏ ପ୍ରବାହିତ
ବିଶ୍ୱନାଥ ପାଶେ ଯଥା ସୁରତରଙ୍ଗିଣୀ,
କିନ୍ତୁ ସେ ଧବଳବେଣୀ ବୃନ୍ଦାରେ ଗଣିତ
ଏ ସୁରମ୍ୟ ନୀଳ ବେଣୀ ମାନସ ରଞ୍ଜିନୀ ।
ଦାନ୍ତୁକି ପର୍ଶ୍ୱେ ଶୈଳରେ ପ୍ରକାଣ୍ଡ ଉପଳ
ମହାନଦୀ ଜଳେ ହୋଇଛନ୍ତି ନିମଜ୍ଜିତ,
କେତେ ଥିବା ଟେକିଛନ୍ତି ମସ୍ତକ କେବଳ
ପୁଳିନରେ ହୋଇଛନ୍ତି କେତେ ଦଣ୍ଡାୟିତ ;

ଭାବୁଛନ୍ତି ପତ୍ନୀ ମନେ ପୁଲକ ଚଅରେ
ମଲ୍ଲିକା ପ୍ରାବୃଟ-କାଳେ ମନୋମତ ଥରେ ।

୩

ଉତ୍କ୍ରୋଳିଅଣ୍ଡାଟ ଚଟନବସଙ୍କଧାଟ
ଦୋଉଛନ୍ତି ଯା ସୁମନ୍ଦ୍ରିଲ ସୋପାନେସଜ୍ଜିତ,
ମନ୍ଦାକନୀ ମେଳ ପାଇଁ ଏ ସୁଗମ ବାଟ-
ଦେବ ପତ୍ନୀ ଥିଲ ତୁମ୍ଭ ମାନଙ୍କ ସଜ୍ଜିତ ;
କୈଳାସବଦାରଣଧ ମେଖଉବା ପାଇଁ
ସଜ୍ଜିତ ଚଦ୍ଦାଉଛ-ପାଖେ ଗୁରୁଜ ମସ୍ତକ,
ସୁଗମ ସୋପାନପଥେ ଉଠି ଦେବଯାଇଁ
ବସି ତହିଁ ପଢୁଥାଅ ପ୍ରକୃତି ପୁସ୍ତକ ;
ପାରିବେ ଦର୍ଶନ କରି ତୁମ୍ଭ ଶ୍ରୀ-ଚରଣ
ସ୍ୱଳନ୍ଧାଠ-ଶ୍ମଶାନରୁ ତୁମ୍ଭ ଭୂତଗଣ ।

୪

ଛତରସାଗରୁ ଅଧି ଶ୍ୱେତପଦ୍ମବାସ
ବକୂଳ କୁସୁମ ବାସ ସଙ୍ଗେ ପ୍ରେମ ପଥେ ;
ନାସିକା ତର୍ପଣ ପାଇଁ ତୁମ୍ଭ ଚଉପାଶ
ପ୍ରଦକ୍ଷିଣ କରୁଥିବ ତହିଁ ଅବିରତେ ।
ବାଲ୍ମିକ୍ଷା କମଳରୁ ପରିମଳ ଆସି
ଚଳ-ଦଳ ଦଳବାରେ ଦୋଳି ଅମନ୍ତ୍ରିତ
ସେ ସଙ୍ଗେ ମିଶିବ ଜ.ଭ ସେନ୍ଦ୍ରେନ ପ୍ରକାଶି
ତାଙ୍କ ସେ କୌତୁକେ ନଷ୍ଟେ ହେବ ଦରଷିତ

ହୃଦିଦ୍ୱେ ସେ କାଳେ ହେବ ଶାନ୍ତିର ବିକାଶ
ଜଗତରେ ଯହିଁ ଶାନ୍ତି ସେହି କଇଳାସ ।

୫

ତେଣେ ବାମାମଠୁଁ ଏଣେ ରସାଳ ବନରୁ
ଆସୁଥିବ ପିକଧ୍ୱନି ଶ୍ରବଣ ରଞ୍ଜନେ,
ଜଳଚର ପକ୍ଷୀନାଦ ଉଠି ସରୋବରୁ
ମଧୁମୟ ହେଉଥିବ ମଧୁପ ଗୁଞ୍ଜନେ ;
ତରଙ୍ଗିଣୀ ତରଙ୍ଗର କଳକଳ ରବ
କର୍ପୂର ଧବଳ ବାଳିବନ୍ଧ ଅଙ୍କ ଚୁମି
ନାଭୁତ ସମୟ ପାଇ କରୁଥିବ ସ୍ତବ
ନଗରର କୋଳାହଳ ମଧ୍ୟରେ ନ ଭ୍ରମି ।
ତରଙ୍ଗ-ଶୀକର-ସ୍ନିଗ୍ଧ ଦକ୍ଷିଣ ପବନ
ନତ ହୋଇ କରୁଥିବ ପଦ ପ୍ରକ୍ଷାଳନ ।

୬

କାନ୍ଦୁଅଛି ରାଜପୁର କପୋତ ବଦନେ
ବିକଳ ଭିତ୍ତ୍ୟାସେ କରି ସକରୁଣ ସ୍ୱର,
ପୂର୍ବ ଗଉରବମାନ ସ୍ମରି ସ୍ମରି ମନେ
ତମ ବ୍ୟାଜେ ଦୁଃଖେ ଭରି ହୃଦୟ-କନ୍ଦର,
ଯେ ଉଜ୍ଜ୍ୱଳ ଅବରୋଧ ଉଜ୍ଜ୍ୱଳ ବସନେ
ଉଜ୍ଜ୍ୱଳ ରତନେ ହେଉଥିଲା ଭୂଷିତ,
ତାକୁ ଆଜ ଲୂତା ତନ୍ତୁ ଜାଲ ଛାଡ଼ି ଘନେ
କରୁଅଛୁ ଚର୍ମଚଟୀ ମଳ ଦୂଷିତ ;

ଦେଖ ନାଥ ! ଯାଉଅଛୁ ପାନ୍ଥ ତୀର ହ୍ରଦ
ପାଶେ ଥାଉଁ ଥାଉଁ ତୁମ୍ଭେ ଅନାଥ ସୁହ୍ରଦ ।

୭

ପୂର୍ବ ପଶ୍ଚିମରେ ଥାଇ ରମ୍ୟ ଶ୍ୟାମ ବନ
ଗଗନକୁ ଟେକୁଛନ୍ତି ଲମ୍ବ ଲମ୍ବ ଚୂଳ,
ବାଲିବନ୍ଧା ଜଳ ତଳ ପାତାଳ ଭବନ
ମଣ୍ଡୁଛନ୍ତି ନମ୍ର ଶିରେ ୈବେନି ବେନିକୂଳ ।
ଦିଶୁଛନ୍ତି ବେନିବନ ପରସ୍ପର କର—
ପ୍ରସାରଣ କରୁଛନ୍ତି ଛନ୍ଦିବାର ଲୋଭେ,
ଜନି ଲପନରେ ଧୋଇଛନ୍ତି ଅଗ୍ରସର
ନ ପାଇ ନୀରବେ ଯେତେ ରହୁଛନ୍ତି କ୍ଷୋଭେ
ଲୋଭର ପୂରଣ ନାହିଁ କ୍ଷୋଭ ତାର ଫଳ
ଆଶ୍ରିତେ ଫଳାଉଛ କି ? ଆଶ୍ରିତ ବତ୍ସଳ ।

୮

ମୁଚୁକୁନ୍ଦ ଗନ୍ଧ ଯେବେ ମରୁତ ବାହନେ
ଆରୋହି ସଗର୍ବେ କରୁଥିବ ଦିଗ୍‌ବିଜୟ,
ନ ପାଇ ସ୍ୱସମ ବୀର ଭୂତଳେ ଗଗନେ,
ନାସା ରନ୍ଧ୍ର ପଥେ ପଶି ଜିଣିବ ହୃଦୟ ।
ପଦ୍ମନ ବାନ୍ଧିନେଇ ତା ପଦ୍ମକଣ୍ଠକେ,
ଅର୍ଦ୍ଧବୋଧ ଦେବ ଶୁଭ ପ୍ରସାଦ ଅଦ୍ଭୁତ,
ଶ୍ଳାଘ୍ୟ ମଣୁଥିବ ମନ ଥିଲେହେଁ ଅନ୍ତକେ,
ନ ବାଞ୍ଛିବ ଅନ୍ୟ ନିଜ ସ୍ୱଜନ ବିହାର ।

ଦେଉଥିବ ପୁଣି ତଳେ କୁସୁମ ବର୍ଷଣ,
ସେ ଦୃଶ୍ୟ କରିବ ତବ ଚିତ୍ତ ଆକର୍ଷଣ ।

୧୧

"ବର୍ଦ୍ଧମାନ" ଅମ୍ବୁବନୁ ଆସିବେ ଭ୍ରମରେ,
ସୁଖେ ଲଙ୍ଘି ସ୍ୱଚ୍ଛନୀର ସୁନାମୁହୀଧାର;
ବଟକୁଦୁଲୀରେ କ୍ଷଣେ ଅଟକି ଭ୍ରମରେ,
ଘନସାରଦ୍ୱୀପେ ମଣି କରିବେ ସଞ୍ଚାର ।
ନ ପାଇ କୁସୁମ ତହିଁ ଉଡ଼ିବେ ସତ୍ୱର,
ପାଇବେ ଏଠାରେ ପୁଷ୍ପ-ବିଭବ-ଭଣ୍ଡାର,
ଅଲଂକୃତ କରିବେ ତୁମ୍ଭ ପ୍ରସାଦ ଚତ୍ୱର
ଆକାରକୁ ଅନୁକରି ମାଣିକ୍ୟ ଧଣ୍ଡାର ।
ହିଞ୍ଚୁଳ କୁସୁମ ଝୁଲୁଥିବ ମାଳ ମାଳ,
ବସୁରି ପାରିବେ ନାହିଁ ତାକୁ କାଳ କାଳ

୧୨

ସ୍ଥାନେ ସ୍ଥାନେ ନଗରରୁ ସେ ପଥ ଆବଳୀ
ଯାଇ ଦେଉଅଛି ସାନ ଧାରରେ ପ୍ରବେଶ,
ତହୁଁ ଗୃହୀ ନାଗରକେ ହୋଇ କୃତାଞ୍ଜଳି
ବନ୍ଦିବେ ଶ୍ରୀପଦ ବୋଲି "ନମୋ ବ୍ୟୋମକେଶ"
ପୂର୍ଣ୍ଣିମାସ ପ୍ରଭାତରେ ପୁରାଙ୍ଗନା ଗଣ
ଘାଟେ ଘାଟେ ସ୍ନାନ କରି ବିଶୁଦ୍ଧ ହୃଦୟେ,
ଗାଇ ସୁମଧୁରେ ଗୀତ ତୋଷିବେ ଶ୍ରବଣ
ସୁଧାରୁ ବଳିବେ ଯାହା ଦେବଙ୍କ ହୃଦୟେ ,

ମୃଦୁକଣ୍ଠ ବିନମ୍ରିତ ହେ ଅମିୟ ଗାନ
ଶୁଣି କନ୍ଧବୀଏ ମନୁ ଦେଖିବେ ସୁମାନ ।

୧୩

ନଗର ଦିଶିବ ତହୁଁ ପାଦପ ସଙ୍କୁଳ
ତଟେ ଆସି ଉପୁଜିବ କାନନର ଭ୍ରମ,
କ୍ୱଚିତ ଦିଶିବ ଖଣ୍ଡ ଖଣ୍ଡ ସୌଧ ଚୂଳ
ଧରାଧର ତନୁଲିପ୍ତ ବରଫର ସମ ।
ଦୃଶ୍ୟ ହେବ ପଶ୍ଚିମରେ ନଦୀନୀରବକ୍ଷେ
କମ୍ପାମାନ ଦର୍ଘ କାୟ ଭାସମାନ ସେତୁ,
ଲମ୍ବଣ୍ଡା ଗିରିରୁ ଯେତେ ପରପାର ଲକ୍ଷେ
ମହୋରଗ ଅସେ ରେଲ ବଂଶୀଧ୍ୱନି ହେତୁ ।
ଜଳ ଦେଖି ତା ଉପରେ ରହନ୍ତୁ ପହଁର
ଲୌହ ଢୋଲ ଦିଶେ ଅଙ୍ଗ ନୀଳରେଖାପର ।

୧୪

ନଦୀଗର୍ଭେ ମନୋହର ଧବଳ ସୈକତ
ତହିଁ ମଧ୍ୟେ ମନୋହର ସ୍ୱଚ୍ଛ ଜଳଧାର,
ତବ କୋଳେ ଗିରିରାଜ ସୁତା ଶ୍ୟାମାବୃତ
କରୁଅଛୁ ନୟନର ପୀରତ୍ତି ସ୍ୱର୍ଷାରୁ,
ତହୁଁ ଯେତେ ଦୂର ଦୃଷ୍ଟି କରଇ ଗମନ
ଘନଶ୍ୟାମ ବନ ଗିରିରାଜ ବିରାଜିତ,
ଅବନୀର ସୁଷମାରେ ହୋଇ ନିମଗନ
ହୃଦୟର ଦୁଃଖରାଶି କରେ ବିତାଡ଼ିତ ।

ଅଗ୍ନେୟ ଦିଗରେ ଖାଲି ପଡ଼ିଲାଟି ସ୍ଥାନ,
ସନ୍ନିବେଶ ମଧ୍ୟେ ପଶି ରହିଯାଏ ମନ ।

୧୫

ବଢ଼ିଥିବ ନଦୀ ଯେବେ ଦୁଇକୂଳ ଦୃଶ୍ୟ
ପ୍ରକାଶ ଉପଳ ଘଟ୍ଟ ଯାଇଥିବେ ବୁଡ଼ି,
ନାଚୁଥିବ ଶରେ ରଙ୍ଗ ତରଙ୍ଗ ନିଚୟ,
ଭାସୁଥିବେ କାଷ୍ଠମାନ ସ୍ରୋତରେ ଦଉଡ଼ି;
କାଷ୍ଠ ଆଣୁଥିବେ ଲୋକେ କରି ସନ୍ତରଣ;
ନାରିକେଳ କରୁଥିବେ କଣ୍ଡୁଳୀ ଦଳ;
କରୁଥିବେ ସୁମଧୁର ସଙ୍ଗୀତ ଗାୟନ
ତହିଁ ସଙ୍ଗେ ବାଜୁଥିବ ସୁସ୍ୱର ମର୍ଦ୍ଦଳ :
କୃପାବହ୍ନ ଦେଉଥିବ ତାହାଙ୍କୁ ଅଭୟ,
ସହର୍ଷେ ବୋଲନ୍ତେ "ଜୟ ସୋମନାଥ ଜୟ" ।

୧୬

ସମ୍ବେଣ୍ଡର ବିଷମରେ ଯେତେବେଳେ ନାବ
ନାଚୁଥିବ ସମୁଦ୍ରଙ୍କ ତରଙ୍ଗ କାନନେ,
"ଜୟ ସମଲାଇ ଜୟ" ବୋଲି ଉଚ୍ଚସ୍ୱର
କରୁଥିବେ ମାଝିଗଣ ଥରକୁ ଆନନେ ;
ଆବର୍ତ୍ତନରେ ଦେଉଥିବ ସ୍ରୋତବାଟବଣା ।
ଅନେହିଙ୍କ ଦେଉଥିବ ଜୀବନ ସଂଶୟ,
ହିଲୁ ଦେଉଥିବ ତାଙ୍କୁ ଖାଟ ଜଳ କଣା,
ମାଝିସବୁ ବୋଲୁଥିବେ "ସମଲେଇ ଜୟ" !

ଦେଖୁଥିବ ନାଥ ତାଙ୍କୁ କରଦେବ ପାର,
ହୃଦୟରେ କର ନିଜ ସନ୍ତାନ ବିସ୍ତର ।

୧୭

ନିତି ନିତି ଦେଖୁଥିବ ଲାବଣ୍ୟ ଉପରେ,
ସାୟନ୍ତନୀ ପ୍ରକୃତିର ମନୋହର ଖେଳା ;
ପାଟଳ ଗଗନ ପଟେ ବିବିଧ ରୂପରେ,
ନାନାରଙ୍ଗ ବାଦଲଙ୍କ ଲାଗିଥିବ ମେଳା ।
ନବ ନବ ଅଭିନୟ ନବ ନବ ବେଶ,
ନବ ନବ କାନ୍ତିମୟ ନବ ନବ ଛବି,
ନବ ନବ ଶୋଭାଧେନ କପଟେ ପ୍ରବେଶ,
※ ସମୟେ ସମୟେ ତହିଁ ଯୋଗଦେବେ କବି ।
ଉଇଁଥିବ ଦ୍ୱିତୀୟାର ଚନ୍ଦ୍ର ଯେଉଁଦିନ
କା ନେତ୍ର ନ ହେବ ଯହିଁ ପଲକ ବିହୀନ ?

୧୮

ପଶ୍ଚିମେ ଉଠିବ ଯେବେ ଜଳଦ-ପଟଳ
ହେଉଥିବ ସୌଦାମିନୀ ଲାସ୍ୟେ ବିଲମ୍ବିତ,
ଇନ୍ଦ୍ରଧନୁ ଉଠି ତହିଁ ଦିଶିବ ଉଜ୍ଜ୍ୱଳ,
ଶ୍ୟାମଳ ଅଚଳ ଶିର ହେବ ଶୋଭିଷ୍ଟିତ ;
ନବୋଦିତ ଦିନକର କନକ କିରଣ
ଧୀରେ ହେଉଥିବ ନଦୀ ବକ୍ଷେ ବିସ୍ତରିତ ;

---

* କବି—ଶୁକ ।

ହାସ୍ୟମୁଖ ହୋଇଥିବେ ତଟ ତରୁଗଣ,
ବାଲବନ୍ଧା ହୋଇଥିବ ରଜତ-ରଞ୍ଜିତ,
ଉଡ଼ାଉ ଥିବେ ଆସି ତୁମ୍ଭ ଭକ୍ତଗଣ
ଅସିଥରେ ସେହିକାଳେ ମନ୍ଦିର ପ୍ରାଙ୍ଗଣ ।

୧୯

ଯେତେବେଳେ ଉଠିଥିବ ଶଶାଙ୍କ ଗଗନେ
କୌମୁଦୀରେ ହୋଇଥିବ ଦିଗ ଉଦ୍ଭାସିତ ;
ନଦୀସ୍ରୋତ ଗାଉଥିବ କଳ କଳ ସ୍ୱନେ
ଉପଳ ପଟଳ ଅଙ୍ଗେ ହୋଇ ବିତାଡ଼ିତ ;
ଝର୍ଝର କରୁଥିବ ବିକମ୍ପିତ ଜଳ
ମୀନାହତ ସମୁତ୍ଥିତ ଜଳକଣା ପୁଞ୍ଜ,
ଥର ଥର ହେଉଥିବେ ଥର୍ଥର ସକଳ
ମନୋହର ଦିଶୁଥିବ ନୈଦପ ନିକୁଞ୍ଜ ;
ଘଂଶୋଥାନ କରୁଥିବ ନାଥ ବନ୍ଦୋଜନ
ଅବଶ୍ୟ ସେ ଦୃଶ୍ୟ ହେବ ନୟନ ରଞ୍ଜନ ।

୨୦

ପ୍ରଦୋଷେ ସରନ୍ତି ବସ୍ତେ ବୈଷ୍ଣବ ଗାୟନେ,
ଚତୁର୍ଦ୍ଦିଗୁଁ ବିକମ୍ପନ ଆସି କଲେ ସନ୍ଧ୍ୟା,
ବନ୍ଧୁଶବେ କମ୍ପିଥାଇ ଦୂରୁଁ ଦେଖି ବନେ
ଲୁପ୍ତପ୍ରାୟ ହୋଇଅଛି ମଞ୍ଜୀରକ ଅବା,
ବାହୁଡ଼ି ଦଂଶନେ ତୁମ୍ଭ ଦେଉଳ ଉପରେ,
ସ୍ୱର୍ଣ୍ଣ ସ୍ୱର୍ଣ୍ଣ ଶୁଭୁଥିବେ ଦର୍ଶେ ସେ କାଳେ,

କେହେ ବା ଲେଉଟୁଛି ନିଜ ଦଳର ଭିତରେ,
ଥରେ ଥରେ ଦୋଳୁଥିବେ ଲମ୍ଫି ତରୁଡାଳେ ।
ଦେବ, ଦେବ ମନେ ମୁଦ ଅର୍ପିଲେ ଭାବୁକ,
ଦେଖାଇ ଉଭୟ ଢଙ୍ଗେ ନୂଆ କଉତୁକ ।

୬୧

ମାରୁଅଡ଼ ମନେ କୋପ ନଦୀଜଳେ ଝୁଲା—
ଜାଲ ଜାଲ ବୁଲୁଥିବେ ମତ୍ସ୍ୟଜୀବୀ ମାନେ;
ବାଲୁକାରେ ସ୍ଥାନେ ସ୍ଥାନେ ଜଳୁଥିବ ଚୂଲା,
ଦୂରେ ଦୂରେ ଦିଶୁଥିବ ବଣିସାନୁମାନେ ।
ବାଲିରେ ଗାମୁଛା ପାରି ନଗର ନିବାସୀ,
ଶୋଇବସି କରୁଥିବେ ଘର୍ମ ଉପଶମ;
ଗଳ୍ପ ଜଳ୍ପ ସ୍ରୋତେ ମନ ଯାଉଥିବ ଭାସି.
ନୀଳଦଙ୍କୁ ଲୋଡ଼ୁଥିବେ ଚାତକ ଉପମ ।
ବନ୍ଦି ଦୃଶ୍ୟ ଦେଖି ଦେଖି ଶୀତଳ ପବନ,
ସେ ସମୟେ ଦେଉଥିବ ଦାସ୍ୟର ନବନ ।

୬୨

ଦେଖିଥିଲି ଥରେ ଆସି ରଜନୀ ସମୟ
ବାଲିବନ୍ଧା ଜଳସ୍ଥଳ ସୋପାନ ସହିତ,
ଭତ୍ତିବାଥି ଶିରେ ଯେନ ପ୍ରଦୀପ ନିଚୟ
ରମ୍ୟ ଆଲୋକରେ ହେଉଥିଲା ଉଦ୍ଭାସିତ ;
କୋହ୍ଲବଧୂ ହସୀସଙ୍କ ମନ୍ଦିର ଲାବଣ୍ୟ
ରାଜବୃନ୍ଦ ମାନସରେ ହେଉଥିଲା ଉଦ୍ଦୀପ୍ତ;

ଯେଉଁ କନ୍ଦରେ ମୋର ବନ୍ଧି କୌତୁକ ସର୍ଜନା
ପ୍ରସ୍ଫୁଟିତ କରୁଥିଲା ପ୍ରମୋଦର କୋଷ,
ଶ୍ରୀ ସଚ୍ଚିଦାନନ୍ଦ ଦେବ ରାଜସିଂହାସନ—
ଲଭ ଯୋଗୁଁ ହୋଇଥିଲା ସେହି ଆୟୋଜନ ।

୨୩

ଦେଲାନାଥ ଏଡ଼କରେ ହେଉଛନ୍ତି ବରତ
ଲେଖନୀ ମନ୍ଥର କରି ରଖୁଅଛନ୍ତି ବନ୍ଦ,
କିନ୍ତୁ ଚିତ୍ତ ବାରେ ସଦା ରହିବ ନିରତ
ତବ ସୁକୋମଳ ପଦ ଅରବିନ୍ଦ ଦ୍ୱନ୍ଦ ;
ନିତି ନିତି କରୁଥିବ ଏହି ଆବେଦନ
ବ୍ରାହ୍ମଣ କେଶବଙ୍କର ହୋଇ ଅଭ୍ୟୁଦୟ,
ଅବ୍ୟାହତ ହୋଇ ତାଙ୍କ କୋମଳ ଶାସନ
ଯା ଯତନେ ଭୂମ୍ପାଖେ ଶୋଭିର ଆଳୟ ;
ଜୟ ଜୟ ସୋମନାଥ ! ସୋମନାଥ ଜୟ !
ପଶ୍ଚିମ-ଛନ୍ଦଙ୍କ ଦଅ ଆୟୁ ନିରାମୟ ।

———

# ବର୍ଷା ଚିତ୍ର ।

ନାଟ୍ୟକାର ପରି ଆସି ବରଷା ସମୟ
ଦେଖାଉଛି ଲୋକେ ନବ ନବ ଅଭିନୟ ;
କେତେବେଳେ ଏକ ଦଳୁଁ ଉଠି ନବଘନ
ଦେଖୁଁ ଦେଖୁଁ ଢାଙ୍କିଦଏ ସମସ୍ତ ଗଗନ,
ଅନ୍ତରିତ ହୋଇଯାଏ ସ୍ୱର୍ଣ୍ଣ ବର୍ଣ୍ଣ ଖେଳା,
ଶ୍ୟାମ ସ୍ନିଗ୍ଧ ଛାୟାବୃତା ହୋଇଯାଏ ଧରା,
ବସୁମତୀ ରାଣୀ ଅଙ୍ଗୁ ପୀତାମ୍ବର କାଢ଼ି
ପିନ୍ଧାଇ ଦିଏକି ନବଘନ ଶ୍ୟାମ ଶାଢ଼ୀ ?
କେବେ ପ୍ରାଚୀ ନୀଳ ନଭେ ସବିତା ମଣ୍ଡଳ,
ପ୍ରତୀଚୀ ମୂଳରେ ନୀଳ ନୀରଦ ପଟଳ,
ସେ ଜଳଦେ ଇନ୍ଦ୍ରଚାପ ମନୋହର ଦିଶେ
ଦିଗଙ୍ଗନା ଯୁଗ କେଶ ଚାରୁ ଭୂଷା କି ସେ ?
ମୟୂର ମୟୂରୀ ଏଣେ ଶିଖରୀ ଶିଖରେ
ନାଚୁଥାନ୍ତି ଊର୍ଦ୍ଧ୍ୱ ପୁଚ୍ଛେ ପ୍ରେମାନନ୍ଦ ଭରେ ;
ଭଦଭଦଳିଆ ପାଇ ପୁଲକ ଆଧାର
ଉଡ଼ି ବସୁଥାଏ ତରୁ ଚୂଡ଼େ ବାରମ୍ବାର
କନ୍ଦଲପକ୍ଷୀହିଁ ଥରେ ଥରେ ଗୁଡ଼ ସ୍ୱନ
ଉଦ୍ଗାରି କରୁଥାଏ କର୍କି ଝିଣ୍ଟିକା ନିସ୍ୱଣ,

କେବଳ ବର୍ଷଇ ଚଉଦିଗ ଧାରାମୟୀ,
ଜଳଧର ମୟ ବ୍ୟୋମ ଜଳମୟ ମହୀ,
କୃଷିକ୍ଷେତ୍ରେ ବନ୍ଧେ ଜଳ ଲଙ୍ଘି କୃଷିବନ୍ଧ,
ପଙ୍କଡୁଁ ଝରଇ କର ଝର୍ଝର ନିନାଦ,
ଗଜଶୁଣ୍ଡସମ ଧାର ଅଟ୍ଟାଳରୁ ଝରେ,
ରୌପ୍ୟତାର ପରି ଛନ୍ଦୁଁ ପଡ଼େ ଘରେ ଦ୍ୱାରେ ,
ସ୍ରୋତସ୍ୱିନୀ ବନ୍ଧେ ଖରେ ପ୍ଲାବି ବେନି କୂଳ
ଉତ୍ପାଟନ କରି ତଟେ ବିଟପୀଙ୍କ ମୂଳ
ନଦୀର ଗର୍ଜ୍ଜନ ପୁଣି ବୃଷ୍ଟିର ଶବଦ
କଳରବ ଗ୍ରାସି କରେ ଅବନୀ ସ୍ତବ୍ଧା ,
କେତେବେଳେ ବାରି ବିନ୍ଦୁ ଟପର ଟୁପର
ପଡ଼ି ନିନାଦିତ କରେ ପାଦପ ପତର
କାସାରେ ନାଚନ୍ତି ମୀନଗଣ ନବଜଳେ ;
ଗୃତଙ୍କ କ୍ରୀଡ଼ଇ ମୁଦେ ଶ୍ୟାମଘନ ତଳେ ,
ଯୂଥ ଯୂଥ ମଦମତ୍ତ ବନଗଜ ଚଣେ
କ୍ରୀଡ଼ନ୍ତି ଗମ୍ଭୀର ନାଦେ କମ୍ପାଇ କାନନ ,
କେତେବେଳେ ଖସୁଥାଏ ବିରଳ ଶୀକର,
କେତେବେଳେ ଦୃଶ୍ୟହୀନ ବାଦଲ ଆଡ଼ର,
କେତେବେଳେ ପର୍ଣ୍ଣଜାଲ୍ର ରଶ୍ମାଂଶୁ କିରଣ
ଭୂ ପୃଷ୍ଠେ ଭୂଧର ଅଙ୍ଗେ କରଇ ସଞ୍ଚରଣ,
ଭୁଲନ୍ତି ଭୟଣି ଦୁଃଖ ସାରି ଦଳ ଦଳ
କରନ୍ତି ମଧୁର ରବେ ପୂର୍ଣ୍ଣ ବନସ୍ଥଳି ,

